

ଲୋକ କଲ୍ୟାଣ ଗ୍ରନ୍ଥ ମାଳା

# ଚାଷ ଯା'ର ଜମି ତା'ର

ସାମାଜିକ ଶିକ୍ଷା ବିଭାଗ, ଓଡ଼ିଶା ସରକାର

ଲୋକକଲ୍ୟାଣ ଗ୍ରନ୍ଥମାଳା

ଏକାଦଶ ଖଣ୍ଡ

# ଚାଷ ଯା'ର ଜମି ତା'ର

( ଏକାଙ୍କିକା )

[illegible]

ଶ୍ରୀ ଶ୍ୟାମସୁନ୍ଦର ଦାସ

# ଚାଷ ଯା'ର, ଜମି ତା'ର

---

## ପ୍ରଥମ ଦୃଶ୍ୟ

### ମଉଗଇପୁର ଗାଁ ଦାଣ୍ଡ

ପସର ଫାଟିଗଲାଣି—ଜଳଖିଆଇଁ ମାରି ନାହିଁ—ମଣିଷଙ୍କ ଆଖିରୁ ପୂରାପୁରି ନିଦର ନିଶା ଯାଇ ନାହିଁ । ଅଳସରେ ଦେଣା ଝେଟିପିଟି କୁଆଟିଏ ଡାକଦେଇ ଗଲା—"କାଆ, କାଆ"—ଗହଳ ଆମ୍ବତୋଟା ମଝିରୁ ସେତିକବେଳେ କୋଇଲିଟା ଡାକ ଉଠିଲା—"କୁଉ, କୁଉ"—ହୁଉ ହୁଉ ହୋଇ ପାହାନ୍ତ ପହରର କାଳୁଆ ପବନ ଝିଲିକାଏ ଗଛଗୁଡ଼ାଙ୍କୁ ଥରାଇ ଦେଇ ଗଲା । ତା'ରି ପଛେ ପଛେ ଭାସିଆସିଲା ଦୂରରୁ ହଳିଆ ଭାଇର ଗୋଟିଏ ନିଖୁଣ ଗାଉଁଲି ଗୀତ—ଗୀତଟି କ୍ରମେ ନିକଟରୁ ନିକଟତର ହେଲା କାନ୍ଧରେ ଲଙ୍ଗଳ ପକାଇ କଳା ମୁଚୁମୁଚୁ ହଳିଆ ଟୋକାଟିଏ ମନ ମଉଜରେ ଗାଇ ଗାଇ ଗଲା ସେହି ଗୀତଟି—ତା'ପରେ ଟୋକାଇ ମୁଣ୍ଡେଇ ହାତରେ ଦାଆ ଧରି ଆଉ ଜଣେ; କାନ୍ଧରେ କୁରାହାଡ଼ି ପକାଇ ଆଉ ଜଣେ; କରତ, ବଟାଳି ହାତୁଡ଼ିଆର ଧରି କରତିଆଟିଏ; ଭୁଜା ଟୋକେଇ ମୁଣ୍ଡରେ ଥୋଇ ହାତରେ କଡ଼ ହଲାଇ—ହଲାଇ ଗୁଡ଼ିଆଟିଏ—ଏହିପରି ଗୋଟିଏ ଗୋଟିଏ ଲୋକ ଚାଲିଲେ ନସଇ ଗାଁ ଦାଣ୍ଡେ ଦାଣ୍ଡେ—ସମସ୍ତେ ଯେପରି ସେଇ ଗୀତଟିର ଭାଗ ନେଇଛନ୍ତି । ସମସ୍ତଙ୍କ ମୁହଁରେ ଗୀତଟିର ବିଭିନ୍ନ

ଅଂଶ ରୂପାୟିତ—ମୌଳିକ ସ୍ୱର ବିନ୍ୟାସର ପ୍ରଲେପରେ ପ୍ରଭାତୀ ବାୟୁମଣ୍ଡଳ ସ୍ନିଗ୍ଧ ଓ ଉନ୍ମାଦିତ—ପ୍ରତ୍ୟେକ ମାନବର ତନ୍ଦ୍ରିତ ଆବେଶରେ ଆଣିଛି ଅପୂର୍ବ ଜାଗରଣୀ ସେଇ ଗୀତଟି—କର୍ମପ୍ରବଣତାର ଅନାବିଳ ଉତ୍ସ ଯେମିତ ଭରି ଦେଉଛି ଆଳସ୍ୟପରାୟଣ ହୃଦୟର ସ୍ତରେ ସ୍ତରେ···

## ଗୀତ

ଓ··· ଯାଠ ମଣିଷରେ
କାମର ବେଳ ତୋର ଅଇଲା ରେ ଅଇଲା
ରଙ୍ଗେଇ ଉଷା ଫୁଟେଇ ଭୁଲେ (ତା'ର) ଫଗୁମୁଠାକ
ମାଇଲା ରେ ମାଇଲା,
ଟେକ ଦେ ଶେଯ ଆଉ କାହିଁକ ଟିଲି ଆଖି
ଘାଇଲା ରେ ଘାଇଲା । ୦ ।

ଜୁଆଁରୀ ତର ଗଲଣି ଝାଙ୍କ କାଳଅନ୍ଧାରୀ ଯାରେ.
ସୁନେଲି ଛଇ ଚହ୍ଲଟ ହେଲା ସରଗ କାନ୍ଧି ତଳେ;
ମାଟି ମାଆର ସବୁଜ ଶୋଭା (ତୋ'ର) ସାଥ୍ ପରମ
ଛୁଇଲା ରେ ଛୁଇଲା । ୧ ।

ଗୁହାଁ ଏ ଗାନ୍ଧାନ୍ତ ଜନ୍ମରେ, ଧନରେ···ଧନରେ,
ବେଳ ସରିଲେ ଆଉ ନ ଥାଏ ମାନରେ;
ବେଳହୁଁ ଚେତ ନ ପାହୁଁ ଗତ ହେଜୁଥା' କାମ ଯାହା ରଇଲା
ରଇଲା ରେ ଯଇଲା
ତୁଇଁ ତୋହର ଲଙ୍ଗଳ ମୂନ ମାଟି ଦୁନିଆ ଚେଇଁଲା ରେ ଚେଇଁଲା ।୨।

—୦—

(ଏତକବେଳେ ତରବର ହୋଇ ମାରକଣ୍ଡିଆ ପହଞ୍ଚିଲା—ଗରିବ ଚଷାଟିଏ—ମୁଣ୍ଡରେ ଚିରା ଛୁଟ୍ ଗାମୁଛା ଖଣ୍ଡେ ଭିଡ଼ା ହୋଇଛି—ମଷିଆ କରିଆ ଖଣ୍ଡିକ ଦେହରେ ବେଢ଼ା ହୋଇଛି—ଗୋଟିଏ ହାତରେ

**ପାଁଉଣ** ବାଡ଼ି, ଅନ୍ୟହାତରେ ଧରିଥିବା ଲଙ୍ଗଳଟି କାନ୍ଧରେ ପଡ଼ିଛି— ବଡ଼ ବ୍ୟସ୍ତ ହୋଇ ନେପଥ୍ୟକୁ ବାରମ୍ବାର ନିରୀକ୍ଷଣ କରି କହିଲା—)

ମାରକଣ୍ଡିଆ—ହେଏ,ହେଏ, ହେଏ—ଅଃ...ଅଃ...ଅଃ—ଆ' ଆ'— ମଲା, ମଲା, ଗୋସେଇଁଖିଆ, ନବଇଁଶିଆ ହଉଳାଟାକୁ ଡାକୁ ଡାକୁ ପଧାନ ବାଇରେ ପଶି ପାଉଛି—ଦେଖ,ଦେଖ୍,ଦେଖ୍— ବାହାରିଲା ନା ନାଇଁ—ଅହ୍ଃ...ଅହ୍ଃ...ଅହ୍ଃ ଓଲିଆ, ଅଲକ୍ଷଣାଟା ଗୁହାଳରୁ ଫିନ୍ଦ୍ ଫିନ୍ଦ୍ ବାର ହେଉଛି ମୁହଁ ମାରି ମାରି ଯିବ। ରହ୍ଃ,ରହ୍ଃ, ରହ୍ଃ—ଇମିତ ଗୋଟୋଟିଆ ପିଟିମି ଥୋବଗକୁ—ପିଟିପିଟିପିଟି ଏକାବେଳେ ଖମଗ୍ର ନ କରିଛି ତ ମୋ ନାଁ ନାଇଁ ମାରକଣ୍ଡିଆ।

( ଏତକବେଳେ ପହଞ୍ଚିଲା "ଓଥରୀ", ଗାଁର ଗୋଟିଏ ଅବିବାହିତା ଚଷା—ଝିଅ, ଏବେ ମାର୍କଣ୍ଡିଆ ସହିତ ସେ ଥୁଆଡୋଆଇ ହେଉଛି—ଗାଁ ଲୋକେ କହନ୍ତି—ଖୁଣ୍ଟି ଖାଇ ନମ୍ବରି ସେ—କହିନାହିଁ, କେହି ନାହିଁ ତା'ର ମାନ କାଉଁରୀ—ଜୁଆଁ ଯୌବନର ଲାବଣ୍ୟ ଲହଡ଼ିରେ ସବୁ ଖାଲ ଢାଲ ଢୋଇ ଯାଇଛି—ଯାବନ ବନ୍ଧହି ତେଲ ନଗିଡ଼ିଲା ପରି ଚକ୍ ଚକ୍ ମାରୁଛି—ମାଙ୍ଗରେ ସିନ୍ଦୁର କଳାଟି ଟିକେ ଲାଲ ଫିତାଟି ପରି କପାଳ ଉପରକୁ ଓହ୍ଲାଇ ପଡ଼ିଛି—କାନରେ ଯୋଡ଼ିଏ—ଲବଙ୍ଗ, ନାକରେ ଲୁଡ଼ୁକିଟିଏ—ବେକରେ ମଲ୍ଲିକଢ଼ୀ ମାଳ—ହାତରେ କାଚ ଆଉ ଶଙ୍ଖାମିଶା ପିନ୍ଧାଖଡ଼ୁ ଦି'ପଟ—ଗୋଡ଼ରେ ରଙ୍ଗର ଗଣ୍ଠିବନ୍ଧା ଝଲେ— ପିନ୍ଧିଛି, ଦେଖା ନଆ ଲାଲି ଶାଢ଼ୀ ଖଣ୍ଡେ—ମାର୍କଣ୍ଡିଆକୁ ଡାକ ଡାକ ପହଞ୍ଚିଲା )

ଓଥରୀ—ହଇହେ—ହେଏ—ମଲା, ଶୁଗୁଚି, ମଲା, କାନ କଅଣ ଅଛି ଯେ ଶୁଣିବ, ସେଥିରେ ତ ପଥର ପଡ଼ିଛି—

ମାର୍କଣ୍ଡିଆ—କାଇଁ କଲୋ କାଇଁକି ? ଏତେ ହୁରି ପଡ଼ିଛି। ପଣ୍ଡିଷ ନ ବାହାରୁଣୁ ବଅଲଗୁଡକୁ ପିଟେଇ ଦେଲୁ ମେ ହେଇତ ପୁଣ ବାରି ତା ବାରିରେ ପଶି ଧପଜପଣ କରୁଛନ୍ତି ସେ ଗୁଡ଼କୁ

ଅନେଇଁମି କି ତୋର କଅଁରିଆ ମୁଆଗ ତାକକୁ କାନେଇଁମି କଅ ?

ଓଥସ୍ନି—ହେଏ, ତମକୁ ମୋ ସ୍ୱଣଟି, ଏଇଠି ନେହ୍ନୁସ୍ ହଉଚି—ପୁଞ୍ଜିଏ କ୍ଷତ ଦେଇଚି ମୁଁ—ତୋସ୍ୱଣି କଁସାକ ତକତକ କରି ତୋକି ଦେଇ ଟିଁଅଠି ବାହାରି ଅସିବ ଆସ—ପାଣିଖସ୍ୱଠା ବୃଭଁ ବୃଭଁ କିନା ମାଡ଼ିଆସି ତୋଠି ଶୁଖେଇ ଦଉଚିସସ୍—ଆସ—

ମାର୍କଣ୍ଡିଆ—ଆହା, ହା, ହା,—ଦଇୟା···ଖାଲି ଥପ ଥପ ହୋଇ ନଗିଡ଼ି ପଡ଼ୁଚି—କିଲେ ଅଣଉକଆରୁ ତେତେ ପସ୍ ଗେଧେଉଚି—ବେଳଏ ବାଜି ଦେଏ, ମୁଁ ହ୍ରକୁ ଯିମି—ଘର ଓରିଆ ହଉଚି, ଗୁହାର ପୋଛୁ ହଉଚି—ବାସନ ମଞ୍ଜା ହଉଚି—

ଓଥସ୍ନି—ମଲା—ଇମିତ ଅଇଲା ମରଦ—ବାସୀ ବାସନ ମାଞ୍ଜିଲେ ତ କଁସିଏ ବାଜିମି—ଅମଞ୍ଜା ବାସନରେ ଖାଇଲେ ପା' ଆଇଷ ହାନି—

ମାର୍କଣ୍ଡିଆ—ଓହୋ, ହୋ, ହୋ—କଇଲା, ଆଇଁଷ ହାନି—କଲୋ —"ଚଷା ହୁଡ଼ିଲେ ବରଷେ"ତୋର ଏଇ ଶୁଖିଲା ଅଧିବକୁ ତକେଇମି ତ ତେଣେ ଦ କୁରରୁ ଯିମି । ଖାଉନ୍ଦ ଘିଅଣା ଦେଇ ସକାଳ ସାତପିଡ଼ିର ଶିସ୍ନଧ ବାଜିବ । ଏଣେ ଓରିକିଆ ଯାହା ଦ' ଗୁରିମାସ ପେଇ ତୋସ୍ୱଣି କରି ଚଲୁଚି—ସେତକ ବି ଯିବ । ଯା, ଯାଃ ( ଆଗେଇ ଗଲା )

ଓଥସ୍ନି—ମଲା, ଶୁଗୁଚି—ଏଡ଼ିକିନ କାଠମରଦ—ସ୍ୱଣ ପକେଇଲି—ଯେତେ କ'ଣ ଟିକିଏ ନୋଭ ନାଗୁ ନାଇଁ—

ମାର୍କଣ୍ଡିଆ—ଜାଇଁଲୁ—ଓଥସ୍ନି—ତମ ମାଇକିନା ଜାତର ଏଇ ବଦ ପରକୁତି ପାଇଁ ମୋ ହାଡ଼ ଜରେ—ଯେତେକ ଅବଗୁଣ, ସେତେକ ଅଡ଼ଙ୍ଗିଆ କଥା ଦେଖିବ ମାଇପିଙ୍କଠି —

ଓଥଗ୍ରୀ—ଓହୋ, ହୋ—ମରଦ ଗୁରାଙ୍କ ତ ଖାଲି ଧରମ ସୁଜେଷ୍ଟି—ହଲଲା ପାଣିରେ ଗୋଡ଼ ବୁଡ଼ାନ୍ତି ନାହିଁ । ତମକୁ ହଙ୍କାରେ ବାରେ କଉଚି—ମେତେ ଝିଟ୍ଟୁଆରେ ପିଠିବାଁ ପଡ଼େ, ଆଉ ଏଣିକି ମୋ ନାଁ ଧରିବ ନାହିଁ—ଫେଣେ ସେଇ ଓଥଗ୍ରୀ···ଓଥଗ୍ରୀ···ଓଥଗ୍ରୀ···

ମାର୍କଣ୍ଡିଆ—ତୁଉ କ'ଣ ମୋର ଗୁରୁ ଗୋସେଇଁ କି ? ନାଁ ଧଇଲେ ମେତେ ପାତେକ ନାଗିବ । ଏଇଥି କଅ—ନାଁଟା ତୋର ସିମିତ ଅବାଗିଆ— ଡାକଲେ ମେତେ ନାଜ ନାଗେ ।

ଓଥଗ୍ରୀ—ଆଉ କଁ ? ମୋ ବାପ ବୋଉ ଏଇ ନାଁଆ ରଖିଥିଲେ ଯା —ସିଏ ତ ଇମିତ ଆଦରରେ ବଢେଇଥିଲେ ଯେ ମୋ ନାଁ ଦେଇଥିଲେ "ଆଦୁଗ୍ରୀ"—ତେମେଇ ଠାପଷ୍ଟରେ ଗ୍ଲେପଗ୍ର ହେଇ ତାକୁ ଡାକୁ "ଆଦୁଗ୍ରୀ"କୁ "ଓଥଗ୍ରୀ" କଲ । ତମ ଦେଖା—ଦେଖି ଆଉରି ପାଁ ଜଣ ବି— ।

ମାର୍କଣ୍ଡିଆ—କଲେ, ଗୁଣ ଜାଣି ଡାକୁଥେଲ କି, ଖାଲି କଣ ମାହାରିଆକୁ—ତୁଉ ସିମିତ ଅଧା ତାଳଗଛ ଧାଙ୍ଗଡ଼ି ଠାଏ, ଓଥଗ୍ରୀ ହେଇ ବଇଥେଲୁ ବେଳତ—ଆଲେ ଦେ'ଖେ, ଓଥଗ୍ରୀ, ଓଥଗ୍ରୀ ଡାକଲେ କଣ ହେଲା । "ଓଥଗ୍ରୀ" କରଙ୍କ ତୋ ଠଉଁ ପୋଛି ମେତେ ମୁକୁରେଇ ଫେଣେ ଘରକୁ ଘରଣୀ କଲ ନା—

ଓଥଗ୍ରୀ—ଆହା, ହା, ହା—ଘରକୁ ଘରଣୀ କରି ଫେଣେ ଓଥଗ୍ରୀ ଡାକୁଛ । ନାଜ ନାଗୁ ନାଇଁ ।

ମାର୍କଣ୍ଡିଆ - ନାଜ ! ନାଜ ନାଗୁଛି ବେଲି ଦେଖୁନୁ ବାଠ ମଟିରେ ସୁଗୁଡ଼ି କରୁଛି । ସକାଳୁ ଗୋଠାଏ ଅନୁକୂରରେ ବାହାରିଥେନ—ତୁ ଅମଙ୍ଗୁରିଆଣୀଠା କାହିଁକି ପଛରୁ ଡାକ ପକେଇଲୁ କହନ ?

ଓଥଗ୍ରୀ—ହଉ, ମୁଁ ଅମଙ୍ଗୁଗ୍ରୀ ହେନେ ହେଲି, ତେମେ ଆସିବଟି,

ସେ ତୋରାଣୀ କସାକରେ ବସିପିବୁ ଗଲୁ । (କହି କହି ଚାଲି ଯାଉଁ ଯାଉଁ—ଟିକିଏ ଦୂରରୁ) ଓଥରା ଲୋ କଅଁର ଗାଡ଼ୁଆ ବେରକୁ ଠେକା ଭାତ ପାଣି ଢ଼ିର ମୁଣ୍ଡଟିଁକି ଢାଳି ଯିବୁ । ହେଇତ ଅନା—ଗିନାଏ ମଦରଙ୍ଗା ଶାଗର ସ୍ୱଇ……

ଓଥରା—ଫେଣେ ମୋ ନାଆଁ ଧଇଲୁ । ହଉ, ହଉ, ଘଅଟିକ ଆସିଲେ ମଜା ବୁଝିବୁ ନା – ହେଇ, କାନରେ ଗଣ୍ଠି ପଇଲ — ( କାନରେ ଗଣ୍ଠି ପକାଉ ପକାଉ ଚାଲିଗଲା ) ( ସେଇ ବାଟରେ କୀର୍ତ୍ତିନଆ ( ଜଣେ ଚଷା ) ଆଉ ଗାଁର ପୁରୋହିତ ବଂଶୀୟ ଜଣେ ବ୍ରାହ୍ମଣ, ଭୋବନ ପାଣି, କଥାବାର୍ତ୍ତା ହେଉଁ ହେଉଁ ପହଞ୍ଚିଲେ )

ଭୋବନ—କୀର୍ତ୍ତିନଆ, ଦେ'ଖେ ବାପ, ତୁ ଆଉ ନାଇଁ କରନା—ବାହ୍ମୁଣ ଝଇଲଣ କରିବ—ତୋର ଅଧିକରୁ ଅଧିକ ହବ । ବର୍ତ୍ତମାନକୁ ମୁଁ ବଡ଼ ଅକଳରେ ପଡ଼ିଛିରେ ବାପ -ଅଉଲୁ ଚକଡ଼ା ବିଲ ପାଞ୍ଚମାଣରେ ମୋର ଏପରିପନ୍ତେ ଲଙ୍ଗଳମୁନ ବାଜିନାହିଁ । ବର୍ତ୍ତମାନକୁ ଣ'ଅସର କପିଲ ସିଆ ଗାଜି ଦେଲା ଦିନୁ ସେଥିଁର ବିଲ ଦୋହରା ହଳ ଟେକେଇଲେଣି । ବର୍ତ୍ତମାନକୁ ଘା' ଦୁଆରକୁ ଯାଉଛି, ସେ ମୁହଁ ମୋଡ଼ୁଛି । ଶେଷକୁ ତୋ ଲଙ୍ଗୁଡ଼ ଧରିଛି ବାପ—ବର୍ତ୍ତମାନକୁ ତୁଉ ନାଇଁ କରିଦେଲେ ମୋ ହଳକ ଶୁଖିଯିବ ।

କୀର୍ତ୍ତିନଆ—ଭୋବୁନ କଦେଇ, ତୁମକୁ ବୁଝେଇକ ସବୁ କଇଲି—ତେବେ ନ ବୁଝି'ବ ତ ମୁଁ ଆଉ କ'ଣ କରିମି କୁହ—ଆମେ ମୂଳିଆ ମୁଣ୍ଡ—ଦେହକ କାମ ହାତପଇଠ କରି ମୁଣ୍ଡ ପତେଇ ଦେଇଛୁ-ଯେତେ କ ତୁଳେଇ ମୁଣ୍ଡ ମାଇଲା ବେରକୁ ଅଣ୍ଟାରୁ ବାକୁଲି ଉଠିବ । ହେଇତ ଦେଖନ, ଉଗୁରେସର ବାବୁର ସାତମାଣ ଧରିଛି, ନଙ୍କର ବ'ମାଣେ ଏଗାର ଗୁଣ୍ଠ, ଫେଣେ ବାବନ ପଡ଼ିଆସି ବାରିତର ବିଲ ଅସ୍ତ୍ରକ, ସେବି ମାଣେ କ ପାଞ୍ଚ ସା' କାନ୍ତର ହବ । ଯାଇଁଲ କଦେଇ, ମୁଁ ହେଲି

ଘରକୁ ଏକୁଟିଆ, ଯାନ ଭାଇ ଗୋବରଗଣ୍ଠାତ ମଣିଷ ହେଲା ନାହିଁ । ସବୁ ହାତେ ହାତେ ସମାଳିବାକୁ ପଡ଼ୁଛି—କଣ କରିମି ମେତେ ମାଫିକର ।

ଭେବନ—ଝେ'ଝେ ଜେନାପୁଅ—ବୃତମାନକୁ ତୋ ତୁଣ୍ଡରୁ ନାହିଁପଦ ଶୁଣିଲେ ମୋର ଫାଙ୍କାସି ଉଡ଼ି ଯାଉଛି । କରମ ଅବଲକୁ ଠାକୁରେ ଗଧ ପାଦ ଧରିଥିଲେ। ମୁଁ ବାହ୍ମଣ, ଛତଣି ପାଟକର ରଜା—ତେତେ ବତମାନକୁ ନେହୁର ହଉଚି ବାପ—( ହାତ ଧରି ପକାଇବା ) ଆଉ ନାହିଁ କରନା—ତୋ ପାଉଣା ଉପରେ ଆଉ ଦୁ' ଗୌଣୀ ଦେବ ପଛକେ, ବୃତମାନକୁ ମତେ ଠିକ୍ ଜବାବ ଦେଏ ।

କାଣ୍ଡିମାୟା—ବଡ଼ ମୁଷ୍କିଲ୍ ନୋକ ତେମେ କକେଇ—ମୁଲ ନାଗିମି, ମୋ ଗଣ୍ଡାକ ମୁଁ ନେମି, କେଇ କ'ଣ ମାହାରିଆ ଦବ ନା ମେତେ ଧାନ ଦରବ ଗନ୍ଧଉଚି । ତମ ପାଦ ଛୁଇଁ କଉଚି- ମୁଁ ଆଉ ବାଲ ଧଇଲେ ପାରିମି ନାଇଁ, ପାରିମି ନାଇଁ । ଯାହାକୁ ପାରିମି ନାଇଁ, ତାକୁ ଧରିମି କାଇଁ କଇଲ କକେଇ ମୋ କଥାକୁ ଖଙ୍ଗ ବୁଝିବ ନ । ତମର ସାବକ—ହରିଆ, ନର୍ତମା କୁଆଡ଼େ ଗଲେକ ?

ଭେବନ—ଆରେ ବାପ, ସେଇ ଅଲପେଇସ ନରତମା, ବୃତମାନକୁ ମତେ ଏ ଦହଗଞ୍ଜରେ ପକେଇଛି । ଏସନ କୋଉ କାନ- ତପ୍ଟେର ବାଲ ଭଗ ଧରିଛି, ଛପଣି ଦଶପଣି ଯେ ଠିକ ମୁଣ୍ଡକୁ ମତେ ନାଇଁ କରି ଦେଲା । ବୃତମାନକୁ ମୁଁ ଏବେ କରେ କଣ ? ଭୁଜତ ଜାଣୁ, ଆମେ ବାହ୍ମୁଣିଆ ନୋକ—ହଳ ଛୁଇଁବୁ ନାଇଁ—ସେଇଥି ପାଇଁ ଏତେ କଥା, ବୃତମାନକୁ ନରତମଟା ମେତେ ଟାଁ ଛୁଡ଼ିଆ ଦେଇ ନ ଥାଆନ୍ତା, ତମମାନକୁ ଏତେ ଜିଗର କାଇଁକି କରନ୍ତରେ ବାପ କରିତନଆ—

କାଳିମାସ୍ତ୍ରା— ହଉ କକେଇ, ତୁମେ ଏତେ ଦହିଗି ହୁଅ ନାହିଁ—ମୋ ଭୁଙ୍ଗେଇ ଦାଦା କତକ୍କ ଯାଅ, ତାକୁ ସବୁ ହାଲ ହଇକତ କହିବ । ତା'ର ଭ୍ରାମ, ଧୁସା ଦେଖି ପୁଞ୍ଜାଏ ଭେଣ୍ଡ୍ରା ଭେଣ୍ଡ୍ରା ପୁଅ—ସେ ନଟେଁ ତମ ବାଲ ଧରିବ । ମେତେ ଆଉ କଥା କହିବାକୁ ତର ନାହିଁ କକେଇ, ବହୁତ ଉଚ୍ଛୁର ହେଲାଣି । ତେଣେ ଉପର ସାଇର ଅଗଣାଭାଇ ହାର ଫିଟେଇ ଦେଇ ମେତେ ଖୋଧୁଥିବ । (କହି ତର ତର ହୋଇ ଚାଲିଗଲା)

ଭୋବନା-(ସ୍ୱଗତଃ) ଦଇବ ତୁ ଏତେ ଅନ୍ଧ—ବ୍ରତମାନଙ୍କୁ ବାହ୍ମୁଣ କୁଳରେ ଜନମ ଦେଇ ଏତେ ହୀନମାନ—ଅସଲ କଣ୍ଡିକାଟିଛି ପାଟଙ୍କଙ୍କ ହାତରେ ଦେଇ ଏତେ ବଡ଼ କୁଳକୁ ଇମିତି କଲ-ବଲ କରୁଛୁ । ବ୍ରତମାନଙ୍କୁ ଚୁଷବାସ ଏତେ ଶ୍ରେଷ୍ଠ କାମ ଯେ ବ୍ରାହ୍ମଣେ ହଳ ଛୁଇଁଲେ ନାଙ୍ଗଡ଼ ଖଣ୍ଡେ ଦୋଷୀ । ସଦା-କାଳେ ପର ହାତକୁ ଆଶ୍ରା କରି ଏତେ ହୀନସ୍ଥା ହବାକୁ କଣ ତୁ କପାଳରେ ଲେଖି ଦେଇଛୁ । ହଳିଆ ତାର ମନ ଖୁସିରେ ନଜର ତୋଳି ଓଳିଆ ଭରତି କରି ଯଉଁ ଡାଲା ପଡ଼ି ଗଣ୍ଡିକ ଘରେ ଆଣି ଥୋଇ ଦବ, ବ୍ରତମାନଙ୍କୁ ସେଥିରୁ କୁଟୁଣୀଏ ନେବେ ଚାରିପଣ, ମହାଜନର କରଜ ବାବଦକୁ ଯିବ ଛ' ପଣ, ବଦଳ ସଉଦା ବାବଦକୁ ଯିବ ଦି' ପଣ; ଯୋଗୀ ଭିକାରୀ ନେବେ ଅଧପଣ—ବାକି ବ୍ରତମାନଙ୍କୁ ଯାହା ରହିଲା, ଠାକୁରେ ଜାଣନ୍ତି । ସେଇତକ ମାଲିକର ସେଥିରେ ପୁଣି ବ୍ରତମାନଙ୍କ ଓଷା, ବରତ, ପୁନେଇଁ, ପରବ, ବନ୍ଧୁ ବାନ୍ଧବ, କୁଣିଆ ମଇତ୍ର—ବାର ମାସରେ ତେର ଛଟା । ହାଇରେ ଯୁଗ—ଏଇ ଗଣ୍ଡିକ ଆମଦାନୀ ପାଇଁ ବ୍ରତମାନଙ୍କୁ ପୁଣି ହଳିଆଙ୍କୁ ସତର ଖୋସାମତ—କଣ କରିବା ? ବ୍ରତ-ମାନଙ୍କୁ ଆଉ କେତେ ନୋକର ଗୋଡ଼ ଧରିବା । (ପ୍ରସ୍ଥାନ)

## ପଞ୍ଚ ପରିବର୍ତ୍ତନ



# ଦ୍ୱିତୀୟ ଦୃଶ୍ୟ

## ବାହିନୀପତିଙ୍କ ମଉଡ଼ ଗୃହର ବହିର୍ବାଟୀ

ଗୋଟିଏ ନାତିବୃହତ୍ ଜଣକଆ ଖଟ ଉପରେ ମସୃଣ ସପ ମସିଣାଟିଏ ପଡ଼ିଛି—ତା ଉପରେ ବଡ଼ ମାଣ୍ଡି ଟେକୁ ଠେସ ଦେଇ ଈଷତ ଚକଠାଣିରେ ସତ୍ୟ ସୁନ୍ଦର ବାହିନୀପତି ସମାସୀନ—ସହଧର୍ମିଣୀ ଜ୍ୟୋତିର୍ମୟୀ ଓରଫ୍ ନୈନା ବୋଉ ପାନ ବଟା ପାଖରେ ରଖି ଗୁଆ ଭାଙ୍ଗୁଛନ୍ତି । ସାମନାକୁ ଗୋଟିଏ ପାଖରେ ଗୋଟିଏ ହାତ ବାଲା ବେଞ୍ଚ ଅନ୍ୟ ପାଖରେ ଚଉକିଟିଏ—ଆଗନ୍ତୁକମାନଙ୍କ ପ୍ରତୀକ୍ଷାରେ ବକ୍ଷ ମେଲାଇ ସ୍ୱାଗତ ଜଣାଉ ଅଛି ।

ଇତ୍ୟବସରରେ ବାହିନୀପତିଙ୍କର ସଂକ୍ଷିପ୍ତ ପରିଚୟ ଟିକିଏ ଏଠାରେ ଉଲ୍ଲେଖ କଲେ ବୋଧ ହୁଏ ଅତ୍ୟୁକ୍ତି ହେବ ନାହିଁ । ମଙ୍ଗଳପୁରର ପୁରାତନ ବିଶିଷ୍ଟ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ମଧ୍ୟରେ ସର୍ବୋଚ୍ଚ-ସ୍ଥାନ ଅଧିକାର କରିଥିଲେ ଏହିଁ ବାହିନୀପତିଙ୍କ ପୂର୍ବ ପୁରୁଷ ଏହାଙ୍କର ପିତାମହ ବ୍ରଜସୁନ୍ଦର ନରସିଂହପୁର ଇଷ୍ଟେଟରେ ଦେବୋତ୍ତର ମେନେଜର ରୂପେ ଖୁବ୍ ଦକ୍ଷତାର ସହିତ କାର୍ଯ୍ୟ କରି ରାଜାସାହେବଙ୍କର ଅତି ପ୍ରିୟପାତ୍ର ହୋଇ ଖ୍ୟାତି ଅର୍ଜନ କରିଥିଲେ । ପିତା ଶିବ ସୁନ୍ଦର ବାମଣ୍ଡା ରାଜଦରବାରରେ ପଞ୍ଚପୋଷୀ ପଦବୀ ଲାଭ କରି ରାଜ ପାର୍ଶ୍ୱଦଙ୍କ ମଧ୍ୟରେ ବିଶେଷ ସମ୍ମାନିତ ହୋଇଥିଲେ । ସତ୍ୟ ସୁନ୍ଦର ଯଥାର୍ଥ ଯୋଗ୍ୟତା ହାସଲ କରି ଥିବାରୁ ତାଙ୍କର ପିତାଙ୍କ ବିୟୋଗ ପରେ ଉକ୍ତ ଆସନକୁ ଉନ୍ନୀତ ହୋଇ "ପଞ୍ଚପୋଷୀ" ପଦବୀରେ ଅଳଙ୍କୃତ ତଥା ସମ୍ମାନିତ ହୋଇଥିଲେ । ଇଂରାଜି, ବଙ୍ଗଳା ହିନ୍ଦୀ ଓ ଓଡ଼ିଆ—ଏହି ଚାରି—ଭାଷାରେ ତାଙ୍କର ଢେର ଦଖଲ ଥିଲେ

ମଧ ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ଥିଲା । ପଡ଼ୋଶୀ ଲୋକେ ତାହାଙ୍କୁ ସଂକ୍ଷିପ୍ତରେ "ଦନ୍ତା ପଣ୍ଡିତ" ବୋଲି କହନ୍ତି । ଆମ୍ଭେ ବହୁଶ୍ରମ-ସ୍ୱୀକାର ପୂର୍ବକ ନିଗୂଢ଼ ତଥ୍ୟ ଗବେଷଣା କରି ଦେଖିଛୁଁ—ପ୍ରୋକ୍ତ ନାମର ସାର୍ଥକତାମୂଳରେ ଅଛି—ପ୍ରଧାନ କାରଣ ଯୋଡ଼ିଏ । ପ୍ରଥମତଃ ଉପର ଧାଡ଼ି ଘୁମ୍ପ ଦାନ୍ତ କେତୋଟି ଉର୍ଦ୍ଧ୍ୱ ଭାବରେ ସାମନାକୁ ବାହାରି ଆସି ତାଙ୍କର ଓଷ୍ଠକୁ ଚେଷ୍ଟା ରଖିଥାଏ; ଏଇଟି ଦାର୍ଶନିକ କାରଣ । ଦ୍ୱିତୀୟତଃ ଦନ୍ତା ଶବ୍ଦର ରୂଢ଼ି ପ୍ରୟୋଗ ଅର୍ଥାତ ଅପ୍ରତି-ଦ୍ୱନ୍ଦ୍ୱି । ତତ୍‌କାଳୀନ ପଣ୍ଡିତମାନଙ୍କ ମଧ୍ୟରେ ସର୍ବଶାସ୍ତ୍ରଦର୍ଶୀ; ବିଚକ୍ଷଣ ଏବଂ ବିଶେଷ ବାଗ୍ମୀ ଥିବା ହେତୁ ପ୍ରତ୍ୟେକ ଶାସ୍ତ୍ରବେତ୍ତାଙ୍କ ନିକଟରେ ସେ ପୂଜ୍ୟ ତଥା ସମ୍ମାନିତ ହେଉଥିଲେ । ସୁଦୀର୍ଘକାଳ ରାଜାନୁଗୃହୀତ ଜୀବିକାରେ ନିବର୍ତ୍ତିଥିବା ବ୍ୟକ୍ତି ନିଶ୍ଚୟ ତୋଷାମୋଦ ଖୋର ହୋଇଥାଏ । ମାତ୍ର ବାହିନୀପତି ଏହି ହୀନ ସ୍ୱଭାବର ସମ୍ପୂର୍ଣ୍ଣ ବିପରୀତ ବୋଧକ ଥିଲେ । ସେ ଏପରି ନିର୍ଭୀକ, ସ୍ପଷ୍ଟବାଦୀ, ସଂସ୍କାରକ ଥିଲେ ଯେ ହୃଦୟରେ ଯେଉଁ ନିର୍ମଳ ସତ୍ୟ ସେ ଉପଲବ୍ଧି କରୁଥିଲେ, ଯେତେ ଅପ୍ରିୟ ଓ ଅନର୍ଥଦ୍ୟୋତକ ହେଲେ ମଧ ତାହା ସାଧାରଣରେ ବ୍ୟକ୍ତ କରିବାକୁ ତିଳେମାତ୍ର ପଶ୍ଚାତ୍‌ପଦ ହେଉ ନ ଥିଲେ । ମଞ୍ଜୁଗଜପୁରର କୂଟଚକ୍ରୀ, ପରଶ୍ରୀକାତର, ଖଳ ବ୍ୟକ୍ତିମାନେ ଦନ୍ତା ପଣ୍ଡିତଙ୍କର ଏହି ମହତ୍ ଗୁଣକୁ ଦୁର୍ଗୁଣ ବୋଲି ପ୍ରଚାର କରୁଥିଲେ ।

ବାହିନୀପତିଙ୍କ ସହଧର୍ମିଣୀ ନିହାତି ମରହଟ୍ଟୀ ଢଙ୍ଗର ନାରୀ-ଶାନ୍ତି, ଦୟା, କ୍ଷମା, ଦାକ୍ଷିଣ୍ୟ, ସ୍ନେହ, ମମତାର ସାକ୍ଷାତ୍ ମୂର୍ତ୍ତିମତୀ ଦେବୀ ସେ—ନମ୍ରତା ଓ ଲଜ୍ଜାଆନତମୁଖ ତାଙ୍କର ନାରୀ ସୁଲଭ ଶିଷ୍ଟତାର ପରିଚାୟକ ଥିଲା । ମୁଣ୍ଡରେ ସୀମନ୍ତାବୃତ୍ତ ଓଢ଼ଣୀ ମଧ୍ୟରେ ଥରେ ଥରେ ଥରେ ସ୍ୱାମୀଙ୍କ ଆଡ଼କୁ ଚାହିଁ ଧୀରେ ଧୀରେ କହୁଥିଲେ ।

ଜ୍ୟୋତିର୍ମୟୀ—ଗାଡ଼ୁଆ ଭୁଠରେ ଆଜି କଅଁଳାକୁ ଦେଖିଲି । ଆହା, ବିଚାରି ବଡ଼ ହୀନିଛା ହଉଛି । ଭଗିମାମୁଁଙ୍କ ଗୋଟିଏ ବୋଲି ଝିଅ ସେ । କେଡ଼େ ଅଲିଅଳରେ ବଢ଼ିଥିଲା, ତା କପାଳରେ

ଫୁଣି ଏତେ ଦୁଃଖ ଥିଲା । ନାକପରିକି ଓଢ଼ଣୀ ପକେଇ ଯିଏ ଚନ୍ଦ୍ର ସୁରୁଜ ଦେଖୁନ ଥିଲା, ସେ ଫୁଣି ପଦାକୁ ବାହାରି ବାରଦୁଆରେ (କଥାର ସ୍ୱର ଅକସ୍ମାତ୍ କମି ଯାଇ କାନ କୁହା ସ୍ୱରରେ ରହିଲା) ତ ଙ୍କି ଲୁଚୁଛି । ବ୍ରାହ୍ମଣ ଘର ଲୁଳ ବୋହୂ, ଅଣସର ଘର ତ ଙ୍କିରେ ଚଢ଼ିବା କଥା ଶାସମାଏ ଜାଣିଲେ ତା ଗତଗୋତର ରହିବ ନାହିଁ । କପାଳ ଫାଟିଲା ବୋଲି ଯିନା ଯାଉଛି । ମୁଲ ଗଣ୍ଡିଏ ଯାହା କାନରେ ଆଣୁଛି, ସେଇଥିରେ ଚୂଲି ଉପରକୁ ହାଣ୍ଡି ଯାଉଛି ।

ବାହିମାପତ – କାହିଁକି ? ତା ର କଅଣ ନାହିଁକି ? ପୈତୃକ ପାଞ୍ଚମାଣ ଅଉଲ ନମ୍ବର ଜମି ?

ଜ୍ୟୋତିର୍ମୟୀ—ଅଛି ଯେ ଗଲସନ ନରତମା ହଳଆ ପସ୍ତ ଭୋବନାଙ୍କର ବିଲ ଅଧକୁ ଅଧେ ପଡ଼ିଆ ପକେଇ ଦେଲା । ତାଙ୍କ ଅମଳରେ କଣ ଆମଦାନ କରିଲା କେଜାଣି ପାଞ୍ଚମାସବ ଭରଣା ହେଲାନାହିଁ, ଓଳିଆ ଖାଲି ଫିଲା । ଆଜି କାଁମା କାନ୍ଦିକାନ୍ଦି କଉଥାଏ ଯେ ଗଲା ସୁଁ'ବାର ଦିନ ଶ୍ୱଶୁର ଶିବଧରେ ନକୁ ପଲେଇ ଘରୁ ଚାଉଳ ଗଉଣୀଏ ଆଣି କାମ ଚଳେଇଲା । ଓଳିଏ ଖାଇଲେ ତନ ଓଳି ଓପାସ ।

ବାହିମାପତ—ହେଲେଣି କଣ ଟୁନବୋଉ, ଆଉ ଅଳ୍ପଦିନେ ଦେଖିବ, ଅବସ୍ଥା ବୁଲ କୁତଙ୍କ ଠଉଁ ବଳିପଡ଼ିବ । ସେଦିନ ଗୋହିରୀ ମୁଣ୍ଡରେ ଘଡ଼ିଏ କାଳ ବୁଝେଇଛି । ଭୋବନ କଣ ପିଲାଟିଏ ହେଇଛି, ତ' ମୁଣ୍ଡରେ କଛି ପଶୁ ନାହିଁ ? ଅତ ସିଆଣା କ ନା "ଅତ ସିଆଣା କୁଆ ଘୁଅଖାଏ"—ଜାଣିଛଟି ? ଭୋବନ ଭାବିଥିଲା ଯଜମାନ ଘରୁ ସିଧା ସାମଗ୍ରୀ ଆଣି ନଇତ ଚଳିଯିବ । ଅତ ସହଜ ଉପାୟ । ହାଡ଼ଭଙ୍ଗା ଖଟଣୀ କରି-ବାକୁ ପଡ଼ିବ ନାହିଁ ।

ଜ୍ୟୋତିର୍ମୟୀ ହୁଁ ଗୋ, ସେଦିନ ଟିଇକ ଏହିକଥାତ କହୁଥିଲେ

ସେବକ —କହିଲେ—"ସକାଳୁଉଠି ଯଜମାନଙ୍କ ଘରଆଡ଼େ ଯେଉଁଏ ବୁଲି ଆସିଲେତ ଖାଇବାକୁ ମୋର ପେଟ ନାହିଁ ।"

ବାହିନୀପତି—ଏବେତ ଯଜମାନଙ୍କ ଘରଆଡ଼େ ସକାଳୁ ସଞ୍ଜଯାଏ ଯେଉଁ ଖାଉଛି । କାହିଁ ? କେହି ତ ବାସୀ ମୁହଁରେ ବି ଟିକିଏ ପଚାରୁ ନାହାନ୍ତି ।

ଜ୍ୟୋତିର୍ମୟୀ—ଛିଃ—ଏ ଯଉଁ ଏରିବିଚ୍ଛିଆ କାଳ ହୋଇ ଯେ ଲୋକେ ଜହ୍ନା ଗୋଡ଼ରୁ ଗୁଡ଼ ପୋଛିକି ହାଇତ ଦଉଛନ୍ତି । ଆଉ ଦେବେ କାହାକୁ କଣ ସେ ।

ବାହିନୀପତି—ସବୁଯାକ ଏବେ ନେଏତା—ଦେଏତା କେହି ନାହିଁ । ବୁଝିଲ ଟୁନ ବୋଉ, ଯେଉଁ ହାତରେ ଚଉଦ ପାଆ । ଯାହା ହାଲ, ତାକୁ ବଳେଇଛି—ପରକୁ ତୁମପରି ଦଉଛି କିଏ ? ଏଣିକି ବୁଝି ସମଜି ଦାନ ଧର୍ମକର, ବୁଝିଲ ଟୁନ ବୋଉ !

ଜ୍ୟୋତିର୍ମୟୀ—ଆଉକଣ, ତମରତ ଖାଲି ସରିଯାଉଚ୍ଛି । ଯଉଁ କଥା କହ, ମଣିଷ ଜନ୍ମ ପାଇ ଟିକିଏ ଦାନ, ଧର୍ମ, ଓଷା, ବରତ କରିବ ନାହିଁତ ଆଉ କଣ ଯମ ଦୂତଙ୍କ ହାତରୁ ହାତୁକା ଖାଇ ନରକ କୁଣ୍ଡରେ ପଡ଼ିବ ?

ବାହିନୀପତି—ରଖ ତୁମର ଯମଦୂତହେ । ସେମାନେ ସିନା ମଲାପରେ କେବେ ଘୋଷାରିବେ । ଜୀଅନ୍ତା ବେଳେ ଯେଉଁ ନଗଦ ଯମଦୂତମାନେ ନିତ ଗୁଡ ପାହିଲେ ହାତୁକା ଦଉଛନ୍ତି, ଗୋଇଠାରେ କୁଟି ପକାଉଛନ୍ତି, ଠେଙ୍ଗେଉଛନ୍ତି, ସେମାନଙ୍କଠୁଁ ବର୍ତ୍ତିଲେ ସିନା···ଛାଡ଼ ସେ କଥା—ସେବକ ଇମିତ ହନ୍ତସନ୍ତ ହଉଛି କାହିଁକି ଜାଣିଛ ? ସେ ଗୋଟିଏ ଅସଲ କର୍ମଭୀରୁ ଆଉ ଦୀର୍ଘ ସୂତ୍ରୀ । କିଛି ବୁଝି ପାରିଲ ? ଅର୍ଥାତ୍ କର୍ମ କୋଢ଼ୀ ନଷ୍ଟର୍ମା, ମାଦଳ । କାମଟିଏ କରିବ କରିବ ବୋଲି ପକାଇ ଦେଲେ ସବୁ ପ୍ରକାର ସୁବିଧା ହୁଏ । ଅଳସୁଆ ପଣରେ ଖାଲି ଭିକ ମାଗେ କେହି କେବେ ବଡ଼ ଲୋକ

ହେଲଣି ନା ସେ ହେବ ? ସେତୁକ ଯାହା ଯେତକ ଅଛି, ସେତକ ଆଇତ କରି ଥୋଇ ସମ୍ଭାଳି ଚଳି ପାରିଲେ ଘଷ୍ଟ ତା' ପଇସା ପର ଖାଆନ୍ତେ ।

ଜନବୋଉ—ଆଗୋ, କଛି ହାତପାଣ୍ଠି ତ ଦରକାର । ଖାଲି ବାଡ଼ିରେ କଛି ଖଟେଇଲେତ ଅଣ୍ଟିଏ ପାଇବ ।

ବାହ୍ଲିମାପତ—ଡମରି ସେଇ ହାତ ପାଣ୍ଠି କଥା ମୁଁ କହୁଛି—ହାତର ପାଣ୍ଠି କଣ ସରଗରୁ ଗଳି ପଡ଼ିବ । ଚେଷ୍ଟାକର, ପରିଶ୍ରମ କର କର୍ମକର—କର୍ମମୟ ସଂସାରରେ ମାନବର ଏକମାତ୍ର ଲକ୍ଷ୍ୟ ହେଉଛି କର୍ମନିଷ୍ଠତା—କର୍ମରେ ବିରକ୍ତି, ବିଭ୍ରମ, କ୍ଳାନ୍ତି, ଔଦାସିନ୍ୟ ଦେଖାଗଲେ ସୁଫଳ ପ୍ରସବ ଅସମ୍ଭବ । ବୁଦ୍ଧିମାନ କର୍ମଠ ବ୍ୟକ୍ତି ଏକ ମୁହୂର୍ତ୍ତି ସୁଦ୍ଧା ଅବସନ୍ନ ନ ହୋଇ ଅଦମ୍ୟ ଉତ୍ସାହରେ କର୍ମନିରତ ରହିଥାଏ । ଆମ ଶାସ୍ତ୍ରରେ ଅଛି:—

"ନିଯୁତଂ କୁରୁ କର୍ମ୍ମତ୍ୱଂ କର୍ମ୍ମଜ୍ୟାୟୋହ୍ୟ କର୍ମ୍ମଣ
ଶରୀର ଯାତ୍ରାପିଚତେନ ପ୍ରସିଦ୍ଧେଦ କର୍ମ୍ମଣଃ ।"

ଅସ୍ୟାର୍ଥ, ପ୍ରତ ନିୟୃତ ଅବିଭ୍ରମ ଗତିରେ କର୍ମକର । କର୍ମ ନ କରିବା ଅପେକ୍ଷା କର୍ମ କରିବା ଶ୍ରେୟସ୍କର । କର୍ମ ନ କଲେ ଶରୀର ଯାତ୍ରା ନିର୍ବାହ ହୋଇ ପାରେନା ।

( ବାହ୍ଲିମାପତ ଏକ ଝୋଙ୍କରେ ଅନର୍ଗଳ କହି ଯାଉଥିଲେ ସିନା, ମାତ୍ର ଜନ ବୋଉକୁ ଲକ୍ଷ୍ୟକରି ଜାଣି ପାରିଲେ, ସେ ଅନ୍ୟ-ମନସ୍କା ହୋଇ ପାନ ଭାଙ୍ଗିବାରେ ବ୍ୟସ୍ତ ଅଛନ୍ତି )

ବାହ୍ଲିମାପତ—ବେଶ୍, ତୁମେ ତେଣେ ପାନ ଭାଙ୍ଗିବାରେ ବ୍ୟସ୍ତ—ମୁଁ ମଧ୍ୟ ଏଣେ ଅନର୍ଗଳ "ଅରଣ୍ୟ ରୋଦନ" କରିବାରେ ବ୍ୟସ୍ତ—

ଜନବୋଉ—ମଲ, ତମର ସବୁ ସେଇ ରୋଗ -- କଥାଟି ଠିକଏ ଉଖାରି ଦେଲେ ତମର ପାଠି ଖୋଲିଲା, ମୂଳ ଯେବେ ଥିବ ପାତାଳରେ

ତାଳ ଯାଇ ଉଠିବଣି ସରଗଠି । କାଲ ଆଗରେ ଇମିତ ମୂଳା ଗ୍ଳେବଉ ଥାଅ କାହିଁକି ହେ ?

ବାହିନୀପତି—ଆରେ କଥାତ ମୂଳରୁ ଆରମ୍ଭ ହେଇ ନାହିଁ । କର୍ମ ସମ୍ପର୍କରେ ଅବତାରଣା ମାତ୍ର ଚାଲିଛି—

ଝିନବୋଉ—ତମ ଅବତାରରୁ ମତେ କ ମିଳିବ ହେ । କଥା ପଡ଼ିଥିଲ କଅଁଳାର, ତେବେ କର୍ମ—କର୍ମ ହେଇ କ୍ଷୋଲକ ସତ...କ ପଢ଼ୁଛ ହେ ମୁଁ ସେଥିରୁ କଣ ବୁଝିବା କହିଲ ?

ବାହିନୀପତି—ହୁଁ, ହୁଁ ହେ—ମୁଁ ଆଉ କଣ କହୁଛି କ ?—ସେଇ ଭୋବନ ଘର କଥା—

(ଏତକବେଳେ ସେଇ ବାଟ ଦେଇ ବିରସ ମନରେ ଭୋବନା ଯାଉଥିବା ଦେଖି ବାହିନୀପତି ଡାକଲେ—"ପାଣିଏ; ଶୁଣ,ଶୁଣ" ଝିନବୋଉ ଲଜକରି ପାନଡ଼ାଲା ପ୍ରଭୃତି ସହ ସେହି ଘରୁ ନିଷ୍କ୍ରାନ୍ତ ହେଲେ, ଭୋବନ ଆସି ନମସ୍କାର କରି ଚଉକଠରେ ବସିଲେ । )

ତୁମରି କଥାତ ପଡ଼ିଛି; ପାଣିଏ । ଝିନବୋଉ ତୁମ ପାଇଁ ଘାଁଘା ଦୁଃଖ କରୁଥିଲେ । ତାଙ୍କର ଭଉଣୀ କୁଆଡ଼େ ପିଲାଦିନେ ଖୁବ୍ ଅଲଅଲରେ ବଢ଼ିଥିଲା, ଏବେ ତାକୁ ଦେଖିଲେ ଅମ ଝିନ ବୋଉଙ୍କୁ କାନ୍ଦ ଲାଗୁଛି ( କୃତ୍ରିମ ଭାବରେ ବିଦ୍ରୂପ କରି ହସି ଉଠଲେ ) ।

ଭୋବନ—(ଦୀର୍ଘ ନିଶ୍ବାସ ପକାଇ କହିଲେ) କାନ୍ଦ ଲାଗୁଥିବ ଆଜ୍ଞା—ବର୍ତ୍ତମାନକୁ ସିମିତ ଏକା ମୋ ଅବସ୍ଥାଟା ହେଇ ପଡ଼ିଛି—ଭଗାନ୍ଦ ବ ମୋ ଦୁଃଖ ଦେଖିଲେ ଏଇକ୍ଷଣିକା କାନ୍ଦିବ ଆଜ୍ଞା—ବର୍ତ୍ତମାନକୁ ଠାକୁରଙ୍କୁ ନିସନ୍ଧ୍ୟାରେ ଜଣଉଛି—ସେଇ ଏକା ଉଧାରିଲେ ଉଧାରିବେ ।

ବାହିନୀପତି - ପାଣିଏ. ତୁମେ ଆମ ବ୍ରାହ୍ମଣ କୁଳର ମୂର୍ତ୍ତିମାନ କଳଙ୍କ ।

ଢେବନ—ଆଜ୍ଞା—

ବାହ୍ମିଣୀପତି—ଆଜ୍ଞା ?···କଣ ଆଜ୍ଞା -

ଢେବନ—ଆଜ୍ଞା, ଚନ୍ଦ୍ରରେ ବି କଳଙ୍କ ଅଛି । ବ୍ରତମାନଙ୍କୁ ମୁଁ କଣ କରିବି ? ଏଥିରେ—(ନିଜ କପାଳରେ ବାଣି ଆଙ୍ଗୁଳି ବାଡ଼େଇ ) ବିଧାତା ଲେଖି ଅଛି, କିଏ ଖଣ୍ଡିବ ଆଜ୍ଞା—

ବାହ୍ମିଣୀପତି—ସିଏ ତୁମକୁ ଥରକୁଥର ଦଣ୍ଡିବ ଆଉ ଚଣ୍ଡିବ—ସେହି ସବୁ ଖଣ୍ଡିବ, ଆଉ କିଏ ? ଆଚ୍ଛା, ଆଉ କେତେକାଳ ତୁମେ ଇମିତି ଲୋକମାନଙ୍କୁ ଭଣ୍ଡିବ, କହିଲ ?

ଢେବନ—କଣ କହିଲେ ଆଜ୍ଞା ? ବ୍ରତମାନଙ୍କୁ ମୁଁ ଭଣ୍ଡୁଛି ? କାହାକୁ ଭଣ୍ଡିଲି ଆଜ୍ଞା—? ଜୋ'ଗୁରୁ, ଜୋ'ଗୁରୁ. ଜୋ'ଗୁରୁ,—ବ୍ରତମାନଙ୍କୁ ମତେ ପଛେ ମରଣ ହେଉ, ମୋ କୁଳରେ ଏ ଭଳି ଅପବାଦ ନ ଲାଗୁ !

ବାହ୍ମିଣୀପତି—ତୁମେ କୋଉ କୁଳଟା ରଖିଛ ଯେ ଏତେ କୁଳୁ କୁଳୁ ହେଉଛ । ବରଂ କୁଳନ୍ତାଙ୍କ ପରି ଆଜି ଚମାର, କାଲି ବାଉରୀ, ପାଣ. କଣ୍ଡରଙ୍କ ଗୋଡ଼ ଧରୁ ଧରୁ ତୁମ ଦିନ ସରୁନାହିଁ ।

ଢେବନ—(ବିମର୍ଷ ଭାବେ) କଣ କରିବା ଆଜ୍ଞା—ବ୍ରତମାନଙ୍କୁ ଲୋକଙ୍କୁଁ କହିବାକୁ ତ ବାଗ ମିଳିଛି । କପାଳ ପଡ଼ିଲେ ଘର ଢିଙ୍କିଟା ବି କୁମ୍ଭୀର ପାଲଟି ଯାଏ ।

ବାହ୍ମିଣୀପତି - ଦେଖ ପାଣିଏ,ତୁମେ ଦୁଃଖ ବୁଝ କି ସୁଖ ବୁଝ; ଏହି କପାଳ, ଭାଗ୍ୟ, ବିଧାତା, କହି କହି ବାର ଦୁଆରୁ ବାର ଚିଜ ମାଗି ଗଣ୍ଠିରେ ଗଣ୍ଠି ପକାଇବାର ଯେଉଁ ସହଜ ଉପାୟ ତୁମେ ବାଛି ନେଇଥିଲ, ସେଇଟା ତୁମର ବଞ୍ଚି ରହିବାର ଉଚିତ ପନ୍ଥା ନୁହେଁ । ତାହାଦ୍ୱାରା ତୁମେ ଲୋକଙ୍କ ଭଣ୍ଡି ନାହଁକି ? ପୁଣି ନିଜକୁ ମଧ୍ୟ ଭଣ୍ଡି ଭଣ୍ଡି ଆଜି ଅକର୍ମଣ୍ୟ, ନିଷ୍କର୍ମା ହୋଇ ପରକୁ ଅନୁସରଣ କରୁଛ । ତୁମେ ବ୍ରାହ୍ମଣ-

ପିଲା । ମାନବ ସମାଜର ଶ୍ରେଷ୍ଠ, ପୂଜ୍ୟ, ପୁରୋଧାଙ୍କର ବଂଶଧର ତୁମେ—ବିଦ୍ୟା, ବୁଦ୍ଧି, ଜ୍ଞାନ, ଜପତପ, ମନ୍ତ୍ରଶକ୍ତି ସବୁ ପ୍ରକାର ଅଲୌକିକ ଉତ୍କର୍ଷ ସାଧନାରେ ତୁମର ପୂର୍ବପୁରୁଷଙ୍କର ଆସନ ସର୍ବୋଚ୍ଚ ସୋପାନରେ ଥିଲା । ସେମାନଙ୍କର ନାମ ସ୍ମରଣ କରି ଲୋକେ ମୁଣ୍ଡିଆ ମାରୁଛନ୍ତି । ଆଜ ତୁମେ କପାଳ କପାଳ ହୋଇ ମାଗି—ଖାଉଛ - କେଉଁଠ ମଠିଏ ମିଳିଲା ତ ଚୁଲ୍ଲୀ ଜଳିଲା, ନୋହିଲେ ନିର୍ଜଳା ଏକାଦଶୀ ତୁମେ ବ୍ରାହ୍ମଣ କୁଳର କଳଙ୍କ ନୁହଁ ? ଥରେ ନିଜ ମନକୁ ପଚାରିଲି—

ରୋବନ—ବରଷେ ହେଲା, ଆଜ୍ଞା, ଢେର ଢେର ଚେଷ୍ଟା କଲିଣି । ବ୍ରତମାନଙ୍କୁ ଦଧିବାମନ ଦେଉଳର ପୂଜାପଣ୍ଡା କାମପାଇଁ ଜମିଦାରଙ୍କ କଚିରୀକୁ ଦଉଡ଼ି ଦଉଡ଼ି ଗୋଡ଼ରୁ ପାଣିମଲା । ଦେଖିଲାବେଳକୁ ତାଙ୍କ ଘର ପୁହାରୀର ଶଶୁର ମାଗୁଣୀ ପତ୍ରୀ, ସେଇ କାମରେ ବାହାଲ ହୋଇ ଗଲଣି । ବ୍ରତମାନଙ୍କୁ ସବୁର ଭାଇନା' ାଙ୍ଗେ ଗତ ଖୋଦୁଅକୁ ଗଲି କଲିକତା, ଆମ ବୋହୂର ବାଦ ରସୁଣିଆ ଦି'ପଟ ବନ୍ଧକ ରଖି ସେ ବ୍ରତମାନଙ୍କୁ ବୁଲି ବୁଲି ବୁଲି ବୁଲି ଧଇଁଆ, ଯେତେ ବାବୁବାଡ଼ିମାନଙ୍କରେ ବୁଝିଲି, ତାଙ୍କର ଗିନମାନେ କହିଲେ, "ଖାଏ ପରେ ପାଅ, ସାତ ଠାକାରୁ ବେଶି ଦେଇତେ ପାରବ । ନାଇଁ, ରଇବେ ଠାକୁର"—ଆଜ୍ଞା, ବ୍ରତମାନଙ୍କୁ ଘରଆଡ଼ ଅଚଳ ହେଲାରୁ ମୁଁ ସିନା···

ବାହିନୀପତି—ପାଣିଏ, ଦେଖ, ତୁମେ ବାପା ମାଆଙ୍କର କେଡ଼େ ଯୋଗାପୁଅ—ନିଜ ଦେଶ ଛାଡ଼ି ବଙ୍ଗଳା ମୁଲକରେ ଯାଇ ପୂହାରୀ, ଚାକର ହୋଇ ରହିବା ପାଇଁ ତାଙ୍କର ଗିନ୍ନୀମାନଙ୍କ ପାଖରେ ମୂଲ ହଉଛି—ହଉ, ତା'ପରେ··· ଚାକରୀମଞ୍ଜୁର ହେଲା ?

ରୋବନ--ନାଇଁ ଆଜ୍ଞା—ମନମାନିଲା ନାହିଁ—ବ୍ରତମାନଙ୍କୁ ଆଜ ଠାଆକେ ଜଣେ ବଙ୍ଗାଳୀବାବୁ ମଙ୍ଗିଥେଲା କଇଲା—

"ମୋର ପାଉଁରୁଟି, ବିସ୍କୁଟ, ବାକସ ମୁଣ୍ଡେଇ ବଜାରେ ଫେରି କରି ବିକିବୁ ତ ମାସକୁ ମାଇନା ପନର ଟାକା ଦବା—ଯା ଉପରେ ଖୋରାକ ପୋଷାକ"—ବ୍ରତମାନଙ୍କୁ ଚକରା ନନା କଥାରେ ପଡ଼ି ମୁଁ ହଁଅ କରି ଦେଇଲି। ବାବୁ ମତେ ଡାକ ନେଇ କାନ ପାଖରେ କଇଲା—"ବଜାରେ ବିକା କଣା କରି ଆମ କାରଖାନାର ଉଜାଗରମିଆଁଙ୍କୁ ଟିକିଏ ସାହାଯ୍ୟକରିବୁ —ଏଥେରେ ଯେବେ ରାଜିତ କହ ସାଙ୍ଗେ ସାଙ୍ଗେ ଗୁକିରୀ ଦେବ।" ମନଟା କମିତ ଗୁଁ ପୁଁ ହେଲା- କଇଲି—"ହଉ, ମୁଁ ଚକରାନନାଙ୍କୁ ପଗୁରି କଇବି"—ବ୍ରତମାନଙ୍କୁ ବାପ ମାଆଙ୍କ ସୁକୃତ ବଳରୁ ଆଉ ସେ ଥାନ ମାଡ଼ିନାଇଁ।

ବାହିନୀପତି—ଛି, ଛି, ଛି,—ଥାଉ, ଥାଉ, ପାଣିଏ, ତୁମର ସେହି ସୁଷ୍ୟାଙ୍ଗର କାହାଣୀଗୁଡ଼ାକ ଆଉ କହ ନାହିଁ। ସାବଧାନ, ଆଉ କାହାପାଖରେ ମଧ୍ୟ ଏ ସବୁ ବଖାଣିବ ନାଇଁ। ବୁଝିଲ, "ସ୍ତ୍ରୈରମାଆ କାନ୍ଦେନାହିଁ, ଯେବେ କନ୍ଦେ, କବାଟ କଳା କାନ୍ଦେ।" ତୁମେ ନିଜର ଘରଧନ୍ଦା ନ କରି, ଘରର ସହିଁ ସହିଁ ପାଣ ପଠାଣ ପର୍ଯ୍ୟନ୍ତ ଗଣୁଣି, ଆହୁରି କାହାଣୀ କହୁଛ। ତୁମର ବାପେ, ଗୋସାଁପେ ଯାହାକିଛି ରଖି ଯାଇଛନ୍ତି, ବାହ- ମେହେନ୍ତ କରି ସେହିତକ ନେଇ ଆଣି ଥୋଇ ଜାଣିଲେ ବରଷକ ତୁମର ବେଶ୍ ସୁରୁଖୁରୁରେ କଟି ଯାଆନ୍ତା।

ସେବକ—ଆଜ୍ଞା—ମୁଁ କ'ଣ ସେଥିରେ ନାମଙ୍ଗଅଛି—ବ୍ରତମାନଙ୍କୁ ହେଇତପର ଭୁଙ୍ଗେଇ ଜେନା କତରୁ ଫେରୁଛି। ଭୁଙ୍ଗେଇ କଉଚି—"ହଁ, ମୁଁ ଶଲତଙ୍କ ଧରିବା ଗୋସେଇଁ ହେଲେ, ବ୍ରତମାନଙ୍କୁ - ମୋର ଦଶପଣି, ତମର ଛଅପଣି। ଏଥେରେ ଯେବେ ରାଜି ଅଛତ ଦ'ଗାରେ ଲେଖି ସିଠାମରେ ଦସକତ କରିଦିଅ। କାଲି ହଳ ପଟେଇବ।" ବ୍ରତମାନଙ୍କୁ ଯାଉଚିପରା ଦୁରୁଯା ନାହାକ କତଙ୍କ, ତାହାଠୁଁ ଖଣ୍ଡେ ଲେଖେଇକି ଆଜି ଯିମିତ ହେଲେ ଯେ ଅଳଆ ତୁଟେଇବ।

ବାହିନୀପତି—ବୁଝିଲ ପାଣିଏ, ତୁମେ ଗୋଟାଏ ଭୂତ । ତୁମ ମୁଣ୍ଡରେ ଠିକଏ ହେଲେ ଅକଲ ନାହିଁ । ଚଷାପୂଅକୁ ହାତକାଠି ଲେଖିଦେଇ ଛଅପଣି ଭାଗରେ ପାଇବ କେତେ, ହିସାବ କରି ଦେଖିଛ ? ମହାଜନ ତ ପଣକୁ ପଣ । ଦେଶି କରଜବାବଦକୁ ତୁଲାଉ ତୁଲାଉ ତ ତୁମର ଦଫାଶେଷ । ଇଏ କଣ ଯଜମାନ ଘର ସିଧା ସାମଗ୍ରୀ ହେଇଛି କି କାନ୍ଧରେ ବୁଜୁଲିଟିଏ ପକେଇ ଘରକୁ ଫେରିବ ?

ଭୋବନ--ଆଜ୍ଞା, ବଡମାନଙ୍କୁ ମୁଠିଏଦାନାକୁ ତରସିକି ରହୁଚେଁ । ଯା'ହଉ, ଦିନ କେତେଟା ତ ଶାଗ ଭାତ ପୁଞ୍ଜିକରେ ଠାଣ ଠୁଣୁ ହେଇ ବ୍ରତମାନକୁ ଚଳିଯିବ ।

ବାହିନୀପତି—ଆହେ, ବ୍ରତମାନକୁ ଚଳିଯିବ ସିନା—ତା'ପରେ··· "ପୁନର୍ମୁଷିକୋଽଭବ"—ପଉଁ ବୁଜୁଲୀକୁ ସେହି ବୁଜଲୀ—କିଛି ନ ମିଳଲେ ଖାଡ଼ା ଖାଡ଼ା ଉପାସ—ପୁଣି ବ୍ରାହ୍ମଣୀ ଯାଇ ପରଘରେ ଧାନକୁଟିବ । ଯାହାକି ଆମ ବ୍ରାହ୍ମଣ କୁଳକୁ ଘୋର ନିନ୍ଦା ଆଉ ଲଜ୍ଜାର କଥା—ଯେତେ ଲୁଚି ଲୁଚି କଲେହେଁ ଏ କଥା କଣ ପ୍ରଘଟ ହେଉନାହିଁ ।

ଭୋବନ---ଆଜ୍ଞା—

ବାହିନୀପତି—ଏଇ ଖୋସାମତିଆ—ଦୋଅଷରୀଠିକୁ ଖୁବ୍ ଭଲ ପଇଟେଇଛ । ଖାଲି ଆଜ୍ଞା, ଆଜ୍ଞା—ଆମେତ ଖୋଦ୍ ଶ୍ରୀଛମୁଙ୍କ ପାଖେ ପାଖେ ପନ୍ଦର କୋଡ଼ିଏ ବର୍ଷ ରହିଲୁ । ଏତେ ଆଜ୍ଞା ତ ବ୍ୟବହାର କରିନାହୁଁ ।

ଭୋବନ—( କାନମୁଣ୍ଡା ଆଉଁସି ) ଆଜ୍ଞା, ଜମିଦାର ବାବୁଙ୍କ ଘଅଠିକୁ ବରବର ଯିବା ଆସିବାରେ ବ୍ରତମାନଙ୍କୁ ସେଇଟା ମାହାବସ ହେଇ ଯାଇଛି ।

ବାହିନୀପତି—ବେଶ୍, ଭଲ କରିଛ, ବାପ ଅଜାଙ୍କ ନାଆଁ ରଖିଛ । ହଉ ଶୁଣ ପାଣିଏ, ତୁମକୁ ଗୋଟିଏ କଥା କହିବି—କିନ୍ତୁ ମୋ କଥା ମାନିବାକୁ ହେବ ।

ଶ୍ରୀବନ— କଉନ୍ତୁ , କଉନ୍ତୁ— ଆଜ୍ଞା— ଆପଣେ ଯାହା କହିବେ , ନଶ୍ଚେ ମୋର ଭଲ ପାଇଁ—କହିବେ । ଆପଣଙ୍କ କଥା ନ ମାନବ, ଏ ମତ୍ତଗଜପୁ... ଗାଆଁରେ ଇମିତ କୋଉ ପୁଅଅଛି ।

ବାହିନୀପତି—ପାଣିଏ, ତୁମେ ନଜେ ହଳ କର ।

ଶ୍ରୀବନ—( କଛି ନ ବୁଝିଲା ପରି ସନ୍ଦେହ କରି ପଚାରିଲେ )

ବ୍ରତମାନଙ୍କୁ କଣକହିଲେ ଆଜ୍ଞା ?

ବାହିନୀପତି—ହଳ—ହଳ— ତୁମେ କରିବ ? କଣ ହଳ କରି ଆସିବ ନାହିଁ ?

ଶ୍ରୀବନ—କବା କାମଟାଏ ଯେ ଆସିବ ନାଇଁ ଆଜ୍ଞା—କନ୍ତୁ ବ୍ରତମାନଙ୍କୁ ମୁଁ ହଳ କରିବ, ଶାସନୀଏ ମତେ ଆଉ ପାଖ ପୂରେଇବେ ? ଶୁଣିଲଣି ବାସନ୍ଦ —ନିଆଁ ପାଣି ବନ୍ଦ —ବ୍ରତମାନଙ୍କୁ, ଆପଣେ··· ନିଜେ···ବ୍ରାହ୍ମଣ ହେଇ ଯ୍ବା କହୁଛନ୍ତି ଆଜ୍ଞା— ( ଟିକଏ ଶୁଖିଲା ହସ ହସିଲେ )

ବାହିନୀପତି—ହୁଁ—ହୁଁ—ହେ,ମୁଁ କହୁଛି କ'ଣ ମୁଁ କରିଛି । ତୁମେ କର, ବରଷ ଗୋଟାକରେ ତା'ର ମଜାପାଇବ । ଆଉ ଶାସନୀ ବ୍ରାହ୍ମଣ କଏ, ତୁମକୁ ଅଟକ ରଖୁଛି ରଖୁ କେଉଁ ନ୍ୟାୟ ବଳରେ, କେଉଁ ଶାସ୍ତ୍ର ନର୍ଦ୍ଦେଶରେ, କେଉଁ ଅପରାଧରେ ତୁମକୁ ଯେ ବାସନ୍ଦ କରିବେ କରନ୍ତୁ, ସେତେବେଳେ ଦେଖାଯିବ—ଜାତପୁଅ ଯେତେବେଳେ କାନ ପତେଇ ବାର ଦୁଆର ବୁଲି ମାଗି ଖାଉଛି, ସେତେବେଳେ "ଆହା" କହିବା ଦୂରେ ଥାଉ, କଏ ବୋଲି ଟିକଏ ମୁହଁକୁ ଅନାଉ ନାହାନ୍ତି । ଆଉ କାଣିଚାଏ ଦୋଷ ଦେଖିଲେ ଗାଁକୁ ଗାଁ ଲୋକେ ଉଡ଼ି ଆସି ମୁରବିପଣା ଦେଖାଇବେ—କାହିଁକି ? ତୁମେ ତ ଚୋରୀ କରିବାକୁ ଯାଉନ, ଜନାକାରୀ କ ଫୌଜଦାରୀ କରିବାକୁ ଯାଉନ ? ଏତେଡ଼ର ପଡ଼ିଛି କଅଁ ?

ମୁଁ କହୁଛି, ତୁମେ ହଳ କର । ସେଥିପାଇଁ ଯେ କୌଣସି ବିପଦର ସମ୍ମୁଖୀନ ହେବାକୁ ପଡ଼ିଲେ ମୁଁ ତୁମପାଇଁ ପ୍ରସ୍ତୁତ ଅଛି ।

ଖେବନ—ଆଜ୍ଞା, ଆପଣେ ଯେତେବେଳେ କଉଛନ୍ତି, ସେ କଥା ନ ମାନିବ ମୋ ପିଣ୍ଡ କେତେ ! ହେଲେ ଆଜ୍ଞା, ବ୍ରତମାନକୁ ଆପଣ ହେଲେ ବଡ଼ଲୋକ, ଆପଣଙ୍କ କଥା ନିଆରା । ଲୋକେ କହିବେ—"ସାଆନ୍ତେ ସଉକରେ କରୁଛନ୍ତି ନା"—ଆଜ୍ଞା, ବ୍ରତମାନକୁ ଆମେ ତ ଘରଛିଙ୍କର ଗରିବଟାଏ, ସହକେ ମୂଳଆମୁଣ୍ଡ—ଲଙ୍ଗଳ ଧଇଲେ ଖାସମାଏ—ମୋର ଆଉ ଗତଗୋଡର ରଖିବେ ନାଇଁ । ନଥିଲାବେଳେ ପଡ଼ିଶା ଘରୁ ଲୁଣ ଚକଟେ, ଶାଗ କେଟ୍ଟାଏ, ଲଙ୍କା ପୁଞ୍ଜାଏ, କଇଁଆ ବି'ଫଡ଼ା ତ ମିଳିବ ନାଇଁ, ତ'ଛଡ଼ା ମଲ ଗଲ କରି ବି'ସାଙ୍ଗିରୁ ପୋଛିଦେବେ । ଯେଜମାନମାନଙ୍କୁ ଶିଖେଇ ବୁଝେଇ କହିବେ ଯେ ଖେବନଟା ଅକୁଳର ହୋଇଗଲା, ତାକୁ ଆଉ କେହି ଘରେ ପୂରେଇବ ନାଇଁ । ବ୍ରତମାନକୁ ଆଜ୍ଞା......
( ଟିକେ ରହିଗଲେ )

ବାହିନୀପତି—ହୁଁ—ବ୍ରତମାନକୁ ଆଜ୍ଞା କଣ ? ତୁମେ ସବୁଦିନେ ଇମିତି କାନ ପକେଇ ବାରଦୁଆରେ ପେଟ ଦେଖେଇ ବୁଲୁଥିବ । ଶାଗ କେରାଏ, ଲଙ୍କାପୁଞ୍ଜାଏ, କଇଁଆ ବି' ଫଡ଼ା, ପାଇଁ ଦାନ୍ତ ନକୁଟୁଥିବ । କିଏ କହିବେ ମାଗିଖିଆ, କିଏ କହିବେ ନଖାଟ, କିଏ କହିବେ ଢେମଣା, ସବୁ ସହୁଥିବ । ମାତେଣ, ଗଉଣୀଏ ଗୁଉଳ, ଯାହା କରଜ ଆଣି ଚଳିବ, ତାହାକୁ ପୁଣି ତୁମର ମାଇପ ବାର ଦୁଆରେ ଧାନକୁଟି ଶୁଝିବ । ଏଇଟା ତୁମ ପକ୍ଷରେ ବଡ଼ ଗୌରବର କଥା—ବଡ ପ୍ରଶଂସାର କଥା—ନା—?

ଖେବନ—ଆଜ୍ଞା ତା' ନୁହେଁ ଯେ—ବ୍ରତମାନକୁ ମୁଁ ତ କଡ଼ାକର ମୁଣ୍ଡ ନୁହେଁ—ମୋର ଢେଅ ବାରି—ବଳଲେ ବି ହଳେ ବଳଦର

ବାହିନୀପତି—( ଭିତରୁ ଝିଙ୍କିର ଖଡ଼ ଖଡ଼ ଶବ୍ଦରେ ଝୁନବୋଉ ଡାକୁଥିବାର ସୂଚନା ପାଇ କହିଲେ ) ମୋତେ ଢଣ କହୁଛ, ଝୁନ ବୋଉ ? ( ଝୁନବୋଉ ସଶବ୍ଦେ ଭିତର ଦୁଆର ଏରୁଣ୍ଡିବନ୍ଧ ଉପରେ ପାନ ଥାଳିଆଟି ଥୋଇ ଦେଲେ ) ଓହୋ, ହଁ, ହଁ, ନଉଛି—ପାଣିଏ, ପାନ ନିଅ ( କହି ଥାଳିଆଟିକୁ ଆଣିବାକୁ ଉଠି ଯାଉଥିଲେ )

ଭୋବନ – ଆଜ୍ଞା. ମୁଁ ଆଣୁଛି, ଆପଣେ ବସନ୍ତୁ । ( ପାନଥାଳିଆଟି ଆଣି ଖଟ ଉପରେ ରଖି ସେଥିରୁ ଖଣ୍ଡେ ନେଇ ଖାଇଲେ )

ବାହିନୀପତି— ସେତକ ତୁମରିପାଇଁ ପାଣିଏ, ଆଉଖଣ୍ଡେ ନଉ ନାହଁ—ନିଅ—ନିଅ—( ଭୋବନ ଆଉ ଖଣ୍ଡେ ପାନ ନେଲେ ) ଆଉ ଶୁଣ, କାଲି ସକାଳ ନ ହେଉଣୁ ଆସି ଆମର ଅପରିଆକୁ ଡାକବ—ମୁଁ ତାହାକୁ କହି ଦେଇଥିବି, ସେ ଆମର କଷରା ବଳଦ ହଳକ ଅଡ଼େଇ ଲଙ୍ଗଳ ଧରି ତୁମ ବିଲକୁ ଯିବ । ମନେ ରହିଲା—( ବାହିନୀପତି ଖଟରୁ ଓହ୍ଲେଇବା ପାଇଁ ତଳକୁ ଗୋଡ଼ ବଢ଼େଇ ଖଡ଼ମ ପିନ୍ଧିଲେ )

ଭୋବନ—ଆଜ୍ଞା, ଆଜ୍ଞା—ନିଶ୍ଚେ ଆସିବି ଆଜ୍ଞା—କି କଥାଏ—ବ୍ରତମାନକୁ ଆପଣେ—ଯେତେବେଳେ କଉଚନ୍ତି—ଆସିବି ନାଇଁ—ବ୍ରତମାନକୁ ନିଶ୍ଚେ ଆସିବି ଆଜ୍ଞା—

( ମୁଣ୍ଡିଆ ମାରି ଭୋବନା ଅତି ସନ୍ତର୍ପଣରେ ପ୍ରସ୍ଥାନ କଲେ )

ପରଦା ପତନ



# ତୃତୀୟ ଦୃଶ୍ୟ

## ଖଡୁ ପ୍ରଧାନ ଘର ଡିଙ୍କିଶାଳ

କଅଁଳୀ ଆଉ ଓଥଲୀ ଡିଙ୍କିରେ ଚଢ଼ି ଧାନ କୁଟୁଥିଲେ—ଡିଙ୍କି ମୁଣ୍ଡରେ ବସି ଶଙ୍କର ମା ବୁଢ଼ୀ ହାତ ମାରି ଦେଉଁ ଦେଉଁ ନିଜର ପୁରୁଣା ପଣିଆ ଦେଖାଇ ସମସ୍ତଙ୍କର ଘର ସଂସାର କଥା ତନଖି ଥିଲା—

ଶଙ୍କରମା—ହୋଇଲେ କଅଁଳୀ—ଆଲୋ—"ନଈ ବାଙ୍କ ଠେଇଁ ଅଡଡ଼ି ଖସିଲା ଦୁବ କେରି ଗଲା ଛିରିକି, ଭୁଉ ଲୁଚେଇଲେ କି ହବ ଦଇବ କଇଲାଣି ଆଖି ମାରିକି ।" ଲୋପଣ୍ଠା, ସକେଇ ହଉଥେଲୁ କାହିଁକମ୍—ଦାନ୍ତା ପଣ୍ଡେଇ ଘର ହାଳିଆ ସାଙ୍ଗରେ—ଲୋବନୀ ଫଗ ହାଲ କରୁଛି ଲୋ ।

କଅଁଳୀ—ଏ ଆଈଠା ଇମିତ ଜଣେ—ଗାଲୁକଥା ଗୁରୁଙ୍କ ଗଛରୁ ଟେଳି ଆଇଁଲା ଦେରି—କଇବ ଫଗ—ଆଲେ ବୁଢ଼ୀ ଖେଣ୍ଟେଇ, କାଉ କାଆ କରି ନ ଥେଲା, ସିଏ ଫଗ କିମିତ ଅଘଷା ମୁହଁରେ ଧଉଡ଼ିଛନ୍ତି ଦୁରୁଜା ନାହାକ ଘଅଠିକି—

ଶଙ୍କରମା—କାଇଁକି ଲୋ ? ଫେଣେ ତୋ ବାହା ନଗନ ଧରିବ ବେଲି କଅଣ ଗଣା ପୋଛୁ କରିବାକୁ ଯାଇଛି କି ?

କଅଁଳୀ—ମଲୁ ନାଇଁ ପୋଡ଼ା ମୁହିଁ. କେତେ ପାକଳଉଚି । ଆଲୋ, ତାଁ'ଠୁଁ ପା'କ'ଣ କାଗଜ ନେଖେଇ ଡେଣେ ଡେଣେ ଯିବେ ଫୁଣି କରିତନଆ ଦାଦ କଟକ, କଅଣ—ଗିରିମିଟି କରିବାକୁ ।

ଶଙ୍କସ୍ୱମା—ତୋ ମୁଣ୍ଡ କରିବାକୁ—ଦୂର ହୁଣ୍ଡି, ନକୁଳା ପୁରୁଷ—ବିଶୁନିଆ କଅଣ ମେତେ—ମିଛ କହିବ ? ଦେଖି କ ଝାଇଛି ପା'—

କଞ୍ଚନା—ତାଙ୍କରି ଦେହରି କଏ ଦୁଷି ଯାଇଥିବ ମୁଁ—କ ଅପମାନର କଥା କଉଚୁ ଆଈ କହନ ? ଆମର ହେଲା ବ୍ରାହ୍ମଣ କୁଳ—କଲେ, ହଳ ଛୁଇଁଲେ ଛଅ ଘାଆଟି—ଶାସନ ଭିତରେ ଭଗାସ୍ତି ପଣ ପଣ । ସିଏ ପୁଣି ଯ୍ୟା କରିବେ—ମତେ ସିନା ସିମିତ—ଦେଖିଲୁ ବୋଲି କଇଲୁ—ନହାତ ଆପଣାର ସ୍ତ୍ରୀ ସାଇ ପଡ଼ିଶା, ମାଉଷୀ, ପିଇଷୀ, ଘର ଡିଙ୍କରେ ପେଟ ସୁଖଣ୍ଡିକ ପାଇଁ ଚଢ଼ିଲି—ତୋ' ପାଖରେ ତା' ପାଖରେ ଦାନ୍ତ—ନକୁଟି ହେଇ ଗରଜ ମେଣ୍ଟେଉଚି ବୋଲି ସିନା କଇଲୁ—ହଉ, ଦେଖେ ଆଈ, ଏ—ନଉଛଣା କଥା ମତେ କଇଲୁତ କଇଲୁ, ଆଉ ସିମିତ ତନ କାନ ନ ହୁଏ । ଭୁଉ ଏଇ ଗାଁଆଁ ପରିଗୁଣ ତ ଜାଣିଚୁ । କୁଆଟାଏ ଉଡ଼ିଗଲେ କୁଆଟାଏ ଉଡ଼ିଗଲା—ବୋଲି ସୁଇଜ ସାସ୍ତ ହାଟ ବସେଇ ଦେବେ । ମୁଁ ପୁଣି ଗରିବର ମାଇପ, ସଭିଁଙ୍କର ଠାପସ୍ତ । ( ଲୁହାଭିଜା ଆଖି ଦୁଇଟା ଲୁଗା କାନରେ ପୋଛି ଦେଲା )

ଶଙ୍କସ୍ୱମା—ହଇ ଲୋ ନାକ କାନ୍ଦୁଡ଼ି, ଏଇ କଥାକୁ ସଙ୍କଉଚୁ—ଦାଣ୍ଡରୁ ଯା' ଶୁଣିଲି, ତା'—କଇଲି—ମୋର ଏଥେରେ କ ଅପ୍ରାଧ ଲୋ ମା—ହଉ, ଦେ,ଦେ, ସେ ଧାନ—ବାଇଁଶିଆକ ପଣି ଦେଲୁ—ମୁଁ ଯାଏଁ—କ ମିଳିବ ସେ ମାହାଲିଆ କଥାରୁ—( କଞ୍ଚନା କିଛି ନ କହି ଧାନ କୁଟିବାରେ ମନ ଦେଲା । ଏତିକିବେଳେ ଖଁଭୁ ପଧାନ ହାତରେ ଗୋଟାଏ ପଘା ଆଉ ଖଣ୍ଡେ ଡାଙ୍ଗଗୁଠ ଧରି ପହଞ୍ଚିଲା···)

ଶଙ୍କସ୍ୱମା—ହେଇତ, ପଧାନ ପୁଅ ବି ତ ଆଇଲଣି—ହଉରେ ବାପ ଖଭୁ, ବେଦନ ବିଲ—ଆଡ଼େ ଯାଇଥିଲୁ କି ?

ଖଣ୍ଡୁ—ନାଇଁ ପିଇଷୀ, ତା ନାଁ କଣ କ ଆମର ଗୁରୁବାସ୍ତିର ସେ ଅଣ୍ଡିଆ ବାଛୁରୀଟାକୁ ଯାଇଥେନ ଖୋଜିବାକୁ—ତା ନାଁ କଣ କ ବାଟେରେ ଭେଟିଲା ମଙ୍ଗୁଳିଆ । କହିଲା—"ଦାଣ୍ଡ, ତା ନାଁ କଣ କ ଗୋବନ ପାଣି ବିଲ ଆଡ଼େ ଇ'ଛୁଣିକା ଗଲେ, ଗୋଟେ ନୂଆ କଥା ଦେଖନ୍ତୁ ।"

ଶଙ୍କରମା—ହଁ, ହଁ ବାପ, ତୁ ଯାଇଥେଲୁ ତ ?

ଖଣ୍ଡୁ—ହଇ—ତା ନାଁ କଣ କି ମନଟା କମିତ ହେଲା—ମଙ୍ଗୁଳିଆ କିମ୍ବା ବାଛୁରୀଟାକୁ ଧରେଇ ଫେରିଲି—ତା ନାଁ କଣ କ ଯାଇ ଦେଖେ ତ ସତକୁ ସତ କଥାଟା ନଉତନ—ଏକା-ବେଳକେ ଅଣ୍ଡିଆଣ କଥା—ଯାହାକ ଆମ ବାପ, ତାଙ୍କ ଦାହାନ୍ତକେ ଦେଖି ନ ଥିଲା, ତା ନାଁ କଣ କ ଜନେ କାଳେ କଉଁଠି ଶୁଣା ନ ଥିଲା—ସେଇଆ ଦେଖି ତ ମୁଁ ତାଟଙ୍କା—ତା ନାଁ କଣ କ ଗୋବନ ପାଣି ନଟେ ମୁଣ୍ଡରେ ଠେକା ଭିଡ଼ି ହଲ କରୁଛି—ଆଉ ପାଖିଣରେ ବଅଲ ଯୋଡ଼ାକ ହଙ୍କେଇ ହଙ୍କେଇ ତା ନାଁ କଣ କ ତା ସାଙ୍ଗରେ ଗୁଲୁଛି ଅପଡ଼ିଆ—ଦାନ୍ତା ପଣ୍ଡିତ ଘର ହଳିଆ ।

ଶଙ୍କରମା—ହେଇତ ଲେ ହେଇତ—ହେଲା ? ଶଙ୍କର ମା ମରିବାକୁ ମାଟି ଖୋଜିଲଣି ମଁ ମିଛୁ କହିବ ନାହିଁ—ମୋ କାନରେ କାଣିଗୁଏ ବାଜି ଯାଇଛି ।

ଖଣ୍ଡୁ—ତା ନାଁ କଣ କ ପିଇଷୀ, ଭୁଣ୍ଡ ବାଇଦ ପସ୍ତ ସହସ୍ର କୋଶ । କଥା ଯାଇ କାହୁଁାତକ ଉଠିଲଣି । ତା ନାଁ କଣ କ ପଚ୍ଛିମ ଶାସନରେ ଡିବା ଡିବାଁ ବାଜିଗଲାଣି । ତା ନାଁ କଣ କ ନକଡ଼ି ସାନ୍ତରା, ମିଛୁ ମାହାପାତ୍ରେ ତା ନାଁ କଣ କ ବାବନ ପଢ଼ିଆରୀ, ଗଣି ଦେବତା, ଫଗଡ଼ି ରଥେ—ଏମାନେ ତ ଖାଲି ପାଚିକି ରଇଲେଣି । ତା' ନାଁ କଣ କି ଆଜି ଗତକ ଭାଗବତ ଟୁଙ୍ଗୀରେ ପରା ମିଟିନ ହବଲୋ—

ଶଙ୍କସ୍ମା—କଁ କଇଲୁ ବାପ ? କଅଣ ହବ ?

ଖତୁ—ମଲ ଯାଃ—ଇଟଲେ ମିଠିନ...ମିଠିନ, ବୁଝି ପାରୁନୁ—ତା.ନାଁ କଣ କି—ସଭ୍...ଭୋବନ ପାଣି କମାଳ ଫାଠିଲ ଲାଗିଥା'—ତା ନାଁ କଣ କି ଜାତଆଣରେ ପୁଅ—ଯେତକ ଦିନ ଚଳଥିଲା ସେତକ । ଏଣିକ ବାଉଘ୍ରି, କଣ୍ଡ୍ରଗଠଉଁ ତା' ଦଶା ବଳି-ପଡ଼ିବ ଲେ ପିଇଷା ।

(ଏତକବେଳେ ତିଙ୍କି ଉପରୁ ଓହ୍ଲାଇ ଆସି କଅଁମା କଇଁ କଇ ହେଇ ବାହୁନିବା ଆରମ୍ଭ କରିଦେଲା)

କଅଁମା—ହୁଁ—ବନ ପୋଡ଼ିଗଲେ ସଭିଙ୍କି ଦିଶେ—ହୁଁ ବାପାସାଆନ୍ତେ—ହୁଁ—ମନ ପୋଡ଼ିଗଲେ କେହି ନ ଜାଣେ—ହୁଁ ବାପା-ସାଆନ୍ତେ—ହୁଁ—ଥଣ୍ଟିଆ ଟାଣିଲ ମଟି ନଈର ହୁଁ—ବାପା ସାଆନ୍ତେ—କେଉଁ ସୁଖ ଦେଖି ଦେଇଥିଲ କି—ହୁଁ । ବାପା-ସାଆନ୍ତେ—ଚୋଠି ନ ଚିପିଲୁ ଜନମ କାଳେ—ହୁଁ ବୋଉଲେ ମୋର—ମମ ହାତେ ଠେକ ଦେଲୁ କେମନ୍ତେ—ହୁଁ । ବୋଉ ଲେ ମୋର—ସୁଖ କି ଦରବ ଜାଣିଲି ନାଇଁ—ହୁଁ । ବୋଉ ଲେ ମୋର—କାନ୍ଦି କାନ୍ଦି ଦିନ ସରିଲା ନାଇଁ—ହୁଁ । ବୋଉ ଲେ ମୋର—ଖଠି ଖଠି ଅଣ୍ଟା ଯାଏ ଘୋଳେଇ—ହୁଁ । ବୋଉ ଲେ ମୋର—ହାଡ଼ରୁ ମାଉଁସ ଯାଏ ମିଳେଇ—ହୁଁ । ବୋଉ ଲେ ମୋର

ଶଙ୍କର୍ମା—( ପାଠିରେ ଲୁଗା ଗେଞ୍ଜି ) ତୁନି ହୁଁ—ତୁନି ହ' ଲେ ମା - ସେ ଭୋବନଟା ମୁଣ୍ଡରେ ଭୂତ ଚଢ଼ିଲା କି? ଦିନେ ନାଇଁ କାଳେ ନାଇଁ—ଗୋଟାଏ ଅଭ୍ରଲ କଥା କରି ବସିଲା । କିରେ, ଟପଜମାନ ଗାଁ ଜଣକୁ ମୁଣ୍ଡେଇ ଥିଲେ, ଖାଇବାକୁ ତୋ ପେଠ ନାଇଁ । ଠୁ କୁରୁ ମୁକୁରୁ ହେଇ ଫେଣେ ଚଳି ଯାଉ ଥେଲୁନା—(କଅଁମା ପ୍ରତି) ହଉ, ହଉ, ତୁନି ହ' ମୋ ମାଆଟା ପରୁ—ମୋ ଧନଟା ପରୁ—ପିଲଟାକୁ କି

ହୀନମାନ କଲା । ବାହ୍ମଣ ଘର ଝିଅ—ଚନ୍ଦର ସୁରୁଯ ଧାସ ବାଙ୍କୁ ନ ଥାଆନ୍ତା—ସେ ଫେଣେ ପରଘର ଟିଙ୍କିରେ ଚଢ଼ି ମୂଲ ନାଗିଲା । ଭଇଗକୁ କାଉଭଇ ଶାସମାଙ୍କ କାନକୁ ଯେ କଥା ମାଇ ନାଇଁ—ଯାଇଥେଲେ, କେତେ ସଭାଗଭା ହେଇ ଛୁ' ମୁଣ୍ଡା ଖଡ଼ି ଛିଡ଼େ ଯାଆନ୍ତାଣି । ଆଉରି କଣ ନା—ତାକୁ ହାଡ଼ି ବାଉରି ଘର ଦେରି ଏକ ଆଡ଼ିଆ ରଖିବ—ହଉ,- ହଉ କଅଁନା. ମୋ ମୁଣ୍ଡ ଖାଉଛି—ତୁନି ହ'—

**କଅଁନା**—( କଇଁ କଇଁ ହୋଇ ) ମୁଁ କ'ଣ କରିବାଲୋ ଆଇ, ମୋ ହଲକ ଶୁଖି ଯାଉଚି ଲୋ—ମୋ ଛାତି ଫାଟିଯାଉଚି—ମୁଁ ସାଣ କଣ୍ଠର ଘର ଦେରି ବାଛନ୍ଦ ହେଇ କମିତ ଚଳିବି । ଦେହରୁ ମୁଣ୍ଡରୁ ତ ସବୁ କାଢ଼ି ଦେଇ ନମ କାଠି ଗୁଞ୍ଜିଛି । କଂସା ବାସନ ଦି'ଖଣ୍ଡ ଯା' ଥେଲା ସେତକ ଗତସନ ମାହାଜନ ଘରେ ଥୋଇ ଖଞ୍ଜଣା ବୁଟେଇଲେ । ଶେଷକୁ ଘର କୋଣରୁ ବାହାରି ଦୁଃଖକରି ଚାଲିଉପରେ ଦି'ଠା ଫୁଟେଇଲି । ଆଉ ମତେ କଏ ଘରେ—ପୂରେଇବ ଲୋ ଆଇ—

**ଖଡୁ**—ହଉ, ହଉ,—କଅଁନା. ତା ନାଁ କଣ କି ତୁ ଏତେ ଦାହିଲି ହୋନା—ବୁଟିବା, ବୁଟିବା—ଆମେ ପାଁଚଣ ଅଣସର ବି ତ ଥିବୁ । ତା ନାଁ କଣ କି ଗେଠାଏ କିଛି କନରୀ କରି ଦବା ମ । ପେଟ ବିକଳରେ ଦୁଉ ଦୋଶି ଗୋଟାଏ କାମ ବାଗୁର କରି ପକେଇଚି—ହଉ—ହେଲା—ତା ନାଁ କଣ କି ପାପକୁ ଓ ପ୍ରାଚିତ୍ତ ଅଛି । ସାହାସ୍ର କହିଛି—ତା ନାଁ କଣ କି "ଦଣ୍ଡିବା ଶକତି ଯାଇ ଥାଇ, ସେ ପୁଣି ଛେମା ଅଚରଇ"—ପାଞ୍ଚ ପରମିଶରଙ୍କ ସାମନାରେ ନମ୍ର ହେଇ ସିଡ଼ି ମାଫି ମାଗନବ । ଆରେ କଏ ଭୁଲ ନ କରୁଚି ହୋ—ତା ନାଁ କ'ଣ କି କିଛି ଅଣ୍ଟାରୁ ଝଡ଼େଇବେ । ହଉ, ଦେଖାଯିବ—ତା ନାଁ କଣ କି ତୁ ଥଏ ଧର, ଇମିତ ହାଉଳି ଖାଇଲେ ଚଳିବ ।

କଞ୍ଚନା—ମଉସା, ଏ ମନ ଯାହା ହଉଚି, ସିଏ ବାନଗଡ କରୁଚି; ସେଇ ଜାଣେ—କେତେ—ଯାଏ ଜରିମାନା ପଡ଼ିବ କଇଲ ମଉସା ଯୋଡ଼ିପାଡ଼ି ରଖିଥିବ ।

ଖଡୁ—ଆଲେ ହଁ ମଁ. ତା ନାଁ କଣ କ ଆଗେ ଡାକ ହେଇଯିବ ପଞ୍ଚଶେ—

କଞ୍ଚନା—ଇଲେ ବୋଷାଲେ—ମୋ ସଂସାର ସରିଗଲା ମଉସା—
(କାନ୍ଦିଲା)

ଖଡୁ—ଆଲେ ଶୁ'ଣୁତ—ଇଟିତ ଘୁନଆ ହଉଚୁ କାଇଁକି ? ତା ନାଁ କଣ କି ପଞ୍ଚଶେରୁ ଏକେବାରେ ଖସିପଡ଼ିବ ପାଞ୍ଚକୁ—ଫୁଣି ତା ନାଁ କଣ କ ପାଞ୍ଚରୁ ରଇବ ଗାଁ ସୁଉକାରେ—ସେଇ ଟା ସୁଉକା ଫୁଣି ତା ନାଁ କଣକ ପାଞ୍ଚଣା ପଇସାଠି ମୁଣ୍ଡିମରିବ । ଜାଇଁ ଲୁ ? ତା ନାଁ କଣ କ ତୁ ପଇସା ପାଞ୍ଚଣା ଯୋଗାଡ଼ କରିଥା',ଦେଖିବା (ନେପଥ୍ୟ ଆଡ଼କୁ ଗଡ ଫେରାଇ) ଆରେ ଚଇତନିଆ, ଚଇତନିଆରେ—ଟୋକାଟା ତ ଖାଲି ହେଣ୍ଡି ମାରି ତା ନାଁ କଣ କି ବାଏଁ ବାଏଁ ବୁଲିଲା—ମୋର ଆସୁ ଆଇଁଲା କି ନାଇଁ—ତା ନାଁ କଣ କି ହେଇଲେ—ଶୁଗୁଚି···
(ପଧାନ ଚାଲିଗଲେ ଭିତରକୁ ଢମ ଢମ ହୋଇ)

ଶଙ୍କରମା—ଯା'ଲେ ଟୋକୀ, ଆଜି ବାଟମଙ୍ଗଳାଙ୍କ କତରେ ସଞ୍ଜଟିଏ ବସେଇ ଓଳିଙ୍କି ହୋଇ ଜଣେଇବୁ । ଭୋବନର ଏ ଘାଟି କଟିଗଲେ ନଟେଁ ଅଣାକର ଭୋଗ ନଗେଇବୁ । ମନେ ରଇଲା ଟି ?

କଞ୍ଚନା—ହଁ ଲୋ ଆଇ, ଏଡ଼େ କଥାଟା (ହାତଯୋଡ଼ି ମୁଣ୍ଡରେ ଲଗାଇ ଲଗାଇ କହିଲା) ଭୁଲିଯିବା । ମା ଦୟାସାଗରୀ ଲୋ, ସତେ ଯେବେ ତୋ ମହିମା ଥବ, ମୋ—ଗୁହାରୀ ଶୁଣିଲେ ନଟେଁ ଭୋଗ ନଗେଇ ମାଜଣା କରିବା । ମାଆ ଲୋ···
(ଯେଇବାଟେ ଭିକାରୀଟିଏ ଗାଇ ଗାଇ ଗଲା—)

—ଭିକାରୀ ଗାଉଥିଲା—

ମାଆଲୋ ତୁ ସବୁ ସାରୁ ଦୁନିଆର
ତୋ ଠେଇଁ ଦୟାର ସମାନ ବାଣ୍ଟ,
ମୋର ମୋର ହୋଇ ଲାଞ୍ଚନେଇ ମିଛ କହିଲେ
ହୁଏ କ ବେଶି ତୋ ଭେଟ ? । ୦ ।

ବଡ଼ ସାନ ଭେଦ ପାତର ଅନ୍ତର,
ତୋ ପାଖେ ନାହିଁ ମା ପର ଆପଣାର;
ସଭିଏଁ ତ ତୁଆ ଚୋର ପଡ଼ିଶିଆ
ମଣିଷ ଭଗେ କ ମଣିଷ ଅଣ୍ଟ । ୧ ।

ମାଟି ଦୁନିଆରେ ବଞ୍ଚିବା ଫିକର,
କରିବାକୁ ମନାଏ କେଉଁ ଅକଲ;
ଉତୁଲେ କାହାର ଅମାର ଖମାର
ନ ପାଏ ଭିକ କେ ଦେଖାଇ ପେଟ । ୨ ।

( ଇତିମଧ୍ୟରେ ଶଙ୍କରମା ଗଉଣୀରେ ମାପି କଣ୍ଟିମା କାନରେ ତାର ଧାନକୁଟା ପାଉଣା ଗଣ୍ଡିକ ଓଜାଡ଼ି ଦେଇଥିଲା । କଣ୍ଟିମା ସେଇଥିରୁ ଭିକାରୀକୁ ମୁଠିଏ ଗୁଉଲ ଦେଲା—)

ଭିକାରୀ—ମା, ବଡ଼ଭ ହେଉ, ଅହିଆଁ ଲେକ୍ଷଣୀ ହୋ—ଧନ, ଜନ, ଗୋପ, ଲକ୍ଷ୍ମୀ ପୂର୍ଣ୍ଣ ରହୁ ।

( ପୁଣି ସେଇ ଗୀତଟି ଗାଇ ଗାଇ ଗୁଲିଗଲା )

(ଗୀତ)—ମନ ଅଛି ଯା'ର ନାହିଁ ତା'ର ଧନ,
ଧନୀ ଲୋଡ଼େ ସଦା ପର ଅରଜନ;
ଥାଉବାଲା ପାଖେ ଥାଇଭ ନ କହି
ଗରିବର ନିତ ଦେଖୁ ତୁ ହଠ । ୩ ।

ମାଆଲୋ ତୁ ସବୁ ସାରୁ ଦୁନିଆର
ତୋଠେଇଁ ଦୟାର ସମାନ ବାଣ୍ଟ— ( ଗୁଲିଗଲା )

ଶଙ୍କରମା—( କୁଲାରେ ପାଳୁଡ଼ି ବାଉଁଶିଆରେ ଗୁଡ଼ଇ ରଖୁ ରଖୁ )
ମଲା ମୋର, "ନିଜ ପେଟ ଯାଏ କଥାବାରିକି, ବନ୍ଧୁ ବାନ୍ଧୁଥାଏ ସାତପିଢ଼ିକି—" ଆଲୋ, ତୋ ଦୁଃଖକୁ ଛ—ହାଡ଼ି, ବାଉଶୀ ନାଇଁ, ସାତଦିନ ଉପାସରେ ପଡ଼ିରଇଲେ ବାସୀ ମୁହଁରେ କେହି ଟିକିଏ ପଗ୍ଭରିବାକୁ ନାଇ —ଭାଡା-ପଣିଆ କଇଲେ ସବୁ ନାଇଁ ଫୁଲେଇର—

କଅଁଳା---ଦୁଃଖୀର ହେଟ ଦୁଃଖୀ ଚିହ୍ନେ ଲୋ ଆଈ---
( ମୁରୁକି ହସି କହି କହି ଗ୍ଭଲଗଲା )

ଶଙ୍କରମା—ହୁଃ—(ମୁହଁ ମୋଡ଼ି କୁଲାକୁ ଠୋକେଇ ଉପରେ ରଖି କାଖେଇ ଗ୍ଭଲଗଲା ଅନ୍ୟଦିଗକୁ )

ପଟ ପରିବର୍ତ୍ତନ

---

# ଚତୁର୍ଥ ଦୃଶ୍ୟ

## ମଉଗଇପୁର ଭାଗବତ ଟୁଙ୍ଗୀ

ଜୀର୍ଣ୍ଣ ଘୁଳଘର ବଖରାଏ—ପିଣ୍ଡାକୁ ଲଗି ବାଁ ପାଖକୁ ବଡ଼ ଚଉପାଢ଼ୀ—ଟୁଙ୍ଗୀ ଦୁଆରଟି ଡାହାଣ ପଟକୁ—ଟୁଙ୍ଗୀ ଭିତରକୁ ଭାଗବତ ଗାଦୀ ବଢେ—ଦୀପଟି ମିଞ୍ଜି ମିଞ୍ଜି ହେଉଛି—ଦାଣ୍ଡ ପିଣ୍ଡାରେ ବ୍ୟାସାସନ ଆଗରେ ଥୋଇ ଖଣ୍ଡିଏ ଆସନ ଉପରେ ବସି—ଭୁବନ ପଣ୍ଡା ପୋଥି ବୋଲୁଛନ୍ତି—ସାମନାରେ ଦୀପରୁଖା ଉପରେ ମାଲପା ଦୀପ—ଆଖିରେ ସୂତାଡ଼ୋର ଲଗା ଅଦଡ଼ ପରଚକ୍ଷୁ—ପାଖରେ ବସିଛି ଖତୁ ପଧାନ, ତା ପାଖକୁ ମାର୍କଣ୍ଡିଆ ଭୁବନ ଗୋସେଇଁ ବୋଲି ଯାଉଛନ୍ତି :—

ଯ୍ୟାଁ···ଆଦ୍ୟରୁ ଅନ୍ନକୁ କରି ସାଧନା, ଗୃଉଲ ସିଦ୍ଧିରେ ଅମରସିନା ।

ଅନ୍ନହିଁ ବ୍ରହ୍ମ ବୋଲି ବେଦେ କହେ, ଅନ୍ନରୁ ଧର୍ମ ଧର୍ମୁ ଜ୍ଞାନ ହୁଏ ।

ଯ୍ୟାଁ···ଜ୍ଞାନରେ ମୋକ୍ଷ ହୋଇ ଭୁଲ ଯଲା ,

ଏଣୁ କରି ଅନ୍ନ ସବୁରି ମୂଳ ।

ମାତା ପିତା ବନ୍ଧୁ ସୋଦର ଠାରେ, ଅନ୍ନ ବିହୁନେ ଭେଦ ବୁଦ୍ଧିକରେ ।
ଯ୍ୟାଁ···ଅନ୍ନ ବିହୁନେ ବୁଲେ ଦ୍ୱାରେ ଦ୍ୱାରେ,

ଅନ୍ନଥିଲେଟି ସର୍ବ ଧର୍ମ କରେ ।

ଅନ୍ନବସ୍ତ୍ରହୀନେ ଜାତିପତିଯାଇ, ଜାତି ଅଜାତି ସବୁ ଘରେ ଖାଇ ।

ମାର୍କଣ୍ଡିଆ—ଏଃ—ଠିକ୍ କହିଛି ଏକା ନୋଥି; ଯାହାସ୍ତ୍ର କଣ ମିଛ ହବ !—କଥାଟା ସଳଖେ ସଳଖେ ଏକା ଦେନେ ଠକ୍ କିନ ଚୁମ୍ବି ଗଲା ।

ଖଡୁ—ଓ ହୋଃ ହୋଃ—ପୁଅତ ଖାଲି ତା ନାଁ କଣକି ଖବରେ ଡୁବୁଡୁବୁ ହେଲାରେ—

ମାର୍କଣ୍ଡିଆ—ପଧାନେ, ଆମ ଗାଁ ଆକୁଳାଟା ମୁଁ, ଗୋକୁଳ ବିଶୁଆଳ ପୁଅ—ବେପାର—ଶିଗ୍ରଧ ଯିବାରେ ହସ୍ତାଏ ହେଇ ନାହିଁ, ଯାହା ବାକି ବୋଳର ବିଲ ପାଞ୍ଚ ପା' କାନ୍ତର ଥିଲା—କଣୁ ମହାଜନକୁ ଶାଗ ଶୁଖୁଆ ଦରରେ ବିକି ଦେଇ ଘରେ ବସି ବସି ଦିନା କେତେ ଖୁବୁ ଖାଇଲା । ମାଲ ପୁଞ୍ଜିକ ମୂଳପୋଛ ହେଲରୁ ବାବୁ ବାହାରିଲେ—ଓଜଗାର କରି ହାବୁଡ଼ା, ହାବୁଡ଼ାରେ ହାବୁକା ଖାଇଲେ କ ଜାବୁଡ଼ା ଖାଇଲେ, ପ୍ରଭୁ ଜାଣେ, ହୋ, ହୋ, ହେଇ ହରି ବୋଲିଆ ଦଳରେ ମିଶିଲେ—ଏବେ ତ ବାବୁ ନୁଖୁରା ନଶ ଦାଢ଼ି ବହଳରେ ମୁହଁଟାକୁ ଫାପୁଲା କରି ଗାଁକୁ ଫେରିଛନ୍ତି ଯେ ଆଉ ଇନ୍ଦ୍ର, ଚନ୍ଦ୍ର ମାନୁ ନାହାନ୍ତି—ଆଉ ଜାତି ଅଜାତି ସଭିଁଙ୍କ ଘରେ କୁଣ୍ଡୁଆଁ ହେଇ ଉଟିଆ ପକଉଛନ୍ତି ।

ଭୁବନ ପଣ୍ଡା—( ଏତେବେଳେକେ ବୁଝିପାରି ) ଓ...ଓ...ସିଏ ଆକୁଳବାବୁ କଥା କଉଛି—ଆରେ, ସେମାନେ ହେଲେ କଂଗ୍ରେସିଆ ଲୋକ—ଗାନ୍ଧୀ ଚେଲା—ସେମାନଙ୍କର—ଜାତି ଅଜାତି ବାଛଣି ନାହିଁ—ଜାଣିଛୁ ?

ମାର୍କଣ୍ଡିଆ—ହଇ, ହଇ, ଗେ ସେଇଁ, ଜାଣିଲି ଯେ—ତେଣେ ପର ଖୁଦ କଣି ଗଣ୍ଡାଏ ନାହିଁ—ପାଠିରେ ଫାଙ୍କିବାକୁ—ଘର ଛିହ୍ନ ଉପରେ ମୃକୁଣ୍ଡା, କନିଶିଆ, ପୋକସୁଙ୍ଗା ବାଣ—ହେଇଚି—

ଖଡୁ—ଚୁପ୍‌କର—କେକେମା କାହାଣୀ ପେଡ଼ି ଫ ଟେଇଲା—ସାହାସ୍ତ
ବୋଲୁ ହଉଚି—ଘଡ଼ିଏ ବସିବା କ ଶୁଣିବା—ତା ନାଁ କଣ
କ ଗୋଠାଏ ବାଇେ କଥା ନେଇ ବକେଉ ବକେତ—ହେଲା
—ଭୁବପ ବୋଲିବଠି ସୋପେଇଁ—ତା ନାଁ କଣ କ ସେଥିରୁ
କ ପଇବା ।

ଭବନ ପଣ୍ଡା—ହୁଁ, ଶଧାନେ, "ଟେଉଟେର୍ଗ୍ । ମହାଗାମ, କ ମିଳାବ
ତହିଁରୁ ଚାଟ—(ମୁଣି ପେଥି ଧରି ଶଡଟେମ୍ଭି ନାକ ଅଗରୁ
ହାଣି ଅଣି, ଦାଗଠି ଟିକଏ—ଚେଳି ଦେଇ ଆରମ୍ଭ କଲେ—)

ଭବନ ପଣ୍ଡା—ହାଁ—ଅଁ—ଆଁ—ଅନ୍ନ ବିନ୍ଦୁନେ ଜା'ତ ଘତ ଯାଇ
…ଯୁଁ । ନନ୍ତି; ବୋଇଲ…ଆଁ ଆଁ…କୁଳର ଅ ମର୍ଯ୍ୟାଦା
ଯୁା ବୁଝି ମେ ଟଇଁଯ…ଅ,

ଅନ୍ନଥିଲେ ହେ ଯୁା" ସବୁ ଆଚମତ… ହୁଁ…ଆଁ…ଆଁ…
ଧର୍ମ କର୍ମରେ ହେଇ ଥାଇ ପେଷ…ଯୁଁୟା ॥

ମୁକଳ…ଅ…କାର୍ମ'ମାନ ନାର୍ଭ ପଇ…ଇ…ଇ

ଅନ୍ନ ସକଳୁ… ଯୁା ହବ ସିଦ୍ଧା ହୋଇ…ହାଁ ଆଁ…ଆଁ—

ଯୁଁୟା—ଏଣୁ କରି କୃଷି ଗ୍ରାହୀ କରିବ, କୃଷିରୁ ଧନ ଅବା ମୂଳଲଭ ।
ଧାନରୁ ଅନ୍ନ…ଇ…ହୁଅଇ ଜାତ, ଏଣୁଟେ କୃଷି କରିବା
ଉଚିତ ।

କୃଷିରୁ ଧନ, ବୁଝି ହେ ବେଶ୍ଚର, କୃଷିଠି ପ୍ରାଣ ଦବୁ ପ୍ରାଣୀଙ୍କର ।

ଖଡୁ ଓ ମାର୍କଣ୍ଡେୟ—ହରିବୋଲ … … … (ହରିବୋଲ)
(ଏତିକି ବେଳେ ଗାଠି ଗୋଲ କରି ଟିକ୍କୁ ମାହାପାତ୍ରେ,
ନକଡ଼ି ସାନ୍ତ୍ରା, ବାବନ ପଢ଼ିହାରୀ, ଗଣି ଦେବତା ପଶି
ଆସିଲେ—ଆଗେ ଆଗେ ଟିଂଡ଼ି ଉଠେଇ ମୁଣ୍ଡ,—ହାତ
ଛୁଲେଇ ମଟମଟକା ସୀ ଦେଖାଉ ଥାଅନ୍ତି—ସବା ପଛରେ
ଅଟେଧ୍ରେଟେ—ଚେଲନ୍ନିକୁତ ବସ୍ତ୍ର ହୋଇ ଖେବାନ୍ନ ପାଣି
ପିଅୁଥିଲେ—)

ନକଡ଼ି— ନଅ ହେ ରଥେ,"ଏବେ ଗୋଟେଇଁ ଅଇଲେ ମୂଳରୁ ଗାଈ—" ଅପ୍ରାଧଷ୍ଠା କଣ — ବୁଝେଇ ଦିଅ — ଇମିତ ପାଣିଛଡ଼ା ଲୋକ ମୁଁ କଉଠି ଦେଖିନଇଁ ।

ଝଗଡ଼ି— କହୋ; ତମ ମୁଣ୍ଡରେ ଭୂତ ଚଢ଼ିଛିକି ? କଉଁ କୁଳରେ ଜନ୍ମ ହେଇ କେତେ କଥା ନ କଲ—ପୁଣି ଶାସନୀ ବ୍ରାହ୍ମଣ—ଗାଁଆ ଗୋଠାକର ପୁରୋହିତ ହେଇ, ତମେ ଶୂଦ୍ର—ସାଙ୍ଗରେ ହାଲ ଧଇଲ—ଆହୁରି କହୁଛ କଣନା" ଅପ୍ରାଧଷ୍ଠା ମୋର ଇମିତ କଣ୍—ହେଲା — "

ବାଉଳି — ଆରେ, ସିଏ ପଦ୍ମ ସିମିତ ଜାଣି ଗମାର ହେ—ଆପଣା "ହସ୍ତେ ଜିଭ୍ୟା ଛେଦ, କେ ତା'ର ଅଛି ପ୍ରତିବାଦୀ—"ପାପର ପ୍ରାଶ୍ଚିତ ପାଇଁ ଯେଜମାନଙ୍କ ଘରେ ନମ୍ବା—ଗୋଡ଼ା ଚାଳିକା ଦେଇଆସୁଛି —ଆଉ ତମ ବେଳକୁ—"ପଣ୍ଡିତ ପୁଅ ମାଙ୍କଡ଼ ମାଇଲେ ଧୋକଡ଼ଠା—"ନା—

ମିଛୁ—ଅଜିଠଉଁ ସବୁ ବନ୍ଦ—ଘର, ଦୁଆର, ନଆଁ ପାଣି, ଧୋବା ଭଣ୍ଡାରୀ, ବନ୍ଧୁ—କୁଣିଆଁ ସବୁ—ଖବର ଦାର୍, କଛି ଠିକଏ ବେଆଇନ କଲେ, ଗାଁ ମହିତୁ—ମଧ ଉଠାଇ ଦେବାର ବେବସ୍ଥା ହବ ।

ଭୋବନ—ଆଜ୍ଞା, ହୀନସ୍ଥା ହେଇ, ବ୍ରତମାନେ କେତେ ଦୁଃଖ କଷ୍ଟ ସହି ସାତ ସାତ ଦିନ ନଜଳା ଓପାସରେ ବ୍ରତମାନ ପାଣି ପିଇ ପିଇ ରହିଛି । ବ୍ରତମାନେ ସାହି ପଡ଼ୋଶୀ, ଜାତ ଅଣସର ସମସ୍ତଙ୍କୁ ଦୁଃଖ ଜଣେଇଛି ଆଜ୍ଞା—କେହି ନ ଶୁଣିବାରୁ ନହାତ ଅକଳରେ ପଡ଼ି ବ୍ରତମାନେ ନବୁଣ୍ଡି, ଗରିବ ବୋଲି ହାତେ ହାତେ ଏଇକାମଟା କରି ପକେଇଛି ।

ନକଡ଼ି—ଆଚ୍ଛା କଥା ଯେ ! କଏ ସିନା ଦିନେ ଓଳିଏ କାହାକୁ ଟେଳାଇ ଦେ—ତୁ ସବୁଦିନେ ପରକୁ ଆଶ୍ରାକଲେ କଏ

ଧବ କହିଲୁ? କାହାର କଣ ଚୋରି ମାଲ—ପଡ଼ିଛି କି ? ପୋଲ ଝିଅଙ୍କୁ ପୋଷିଥିବ ।

ଭୋବନ—ଆଜ୍ଞା, ଧର୍ମ ଅବତାର ପଞ୍ଚ ମାନେ ବସିଛ । ମେ ଅପ୍ରାଧ ପାଇଁ ବର୍ତ୍ତମାନ ଗୋଟାଏ ନିର୍ଦ୍ଦୋଷୀ ମାଇପି ଲୋକ, ବୃନ୍ଦ ମାନଙ୍କୁ ବାଛନ୍ଦ ହୋଇ ନ ଯାଇ. —

ଖଡୁ—( ଠିଆହୋଇ ହାତଯୋଡ଼ି ) ଆଜ୍ଞା, ଗୋଟେଇଁ କୁଳର ପଞ୍ଚପରମେଶ୍ୱର ମନେ ତା ନା କଣଙ୍କ ଆସ୍ଥାନରେ ବିଜେ କରିଛନ୍ତି—ହୁକୁମ୍ ହବ ତ ତା ନାଁ କଣଙ୍କ ଏଇ ଗରିବ ପଦେ କଣ୍ଟି କଇବ—

ମିଛୁ—କହୋ, କଉନ'. ପଧାନେ, କଣ କହିବ, କୁହ, କୁହ— ଇୟେ ଧର୍ମ ସଭା—ଭଗବତ ଗୋସେଇଁ ବିଜେ କରିଛନ୍ତି— ତମେ କଣ ଆଉ ପକ୍ଷପାତର କରି କଇବ ।

ଖଡୁ—ନାଇଁ ଆଜ୍ଞା—ତା ନାଁ କଣଙ୍କ ଆପଣମାନଙ୍କୁ କଇବି, ମୋ ମୁଣ୍ଡ କେତେ କଡ଼ାର—ତା'ନାଁ କଣଙ୍କ କେଇ ଗାଈ, ଚରେଇଲେ ଆପଣ ମଣିଷ ଚରଉଛନ୍ତି. । ତାନାଁ କଣଙ୍କ ଭୋବନ ପାଣିଙ୍କର ଜବୁରୁ କାଇଲି ହେଇଛି । ତାନାଁ କଣଙ୍କ ଦୋଷ କୁ ବି ଦଣ୍ଡ ଠିକ ହେଇଛି—ଆଜ୍ଞା ତାନାଁ କଣଙ୍କ ସମସ୍ତେ ଭୁଲ୍ କରନ୍ତି—ଅଜାଣତରେ ବି ଗୋଡ଼ ଖସି ଯାଏ ତାନାଁ କଣଙ୍କ କପଟ ବାକଲରେ ବି ଲୋକେ କଣ ବୋଲି କଣ କରି ପକାନ୍ତି, ପୁରେଇତେ ବଡ଼ ସାଧାସିଧା ଲୋକ, ଦିନେ, କାଳେ ତାନାଁ କଣଙ୍କ ତାଙ୍କ ନାଁ ରେ କଣ୍ଟି ଶୁଣାନାଇଁ—ଦଇବ ଦୁର୍ବଳକୁ ଗୋଟାଏ କାମ ହେଇ ପଡ଼ିଛି—ଏଇ ପହିଲି ଥର ଆଜ୍ଞା, ତାନାଁ କଣଙ୍କ ତାଙ୍କୁ ମାଫି ଦିଅନ୍ତୁ—ସେ ପଞ୍ଚଙ୍କ ପାଦ ପଦୁଅଁରେ କାଇଲି ପାଉଣା ଗଣ୍ଡାକ ଲୁଚେଇ ଦେଇ ତାନାଁ କଣଙ୍କ ମୁଣ୍ଡିଆ ମାରି କ୍ଷେମା ମାଗି ନିଅନ୍ତୁ—

( ଏତିକବେଳେ ସତ୍ୟସୁନ୍ଦର ବାହିମାପଡ଼ ପହଞ୍ଚିଲେ— ପଇତା ବାଗରେ ଜିହରେ ପଡ଼ିଛି ଖଣ୍ଡେ ଶାନ୍ତିପୁରୀ ଧୋତିର—

ଡାହାଣ ହାତରେ ବାଡ଼ି—ବାଁ ହାତରେ ପାନ ବଟା—
ସାଙ୍ଗରେ ଲଲଣ୍ଠନ ଧରି ଆସିଛି ସେଇ ଅପର୍ତ୍ତିଆ—ବାହିନୀ-
ପତିଙ୍କ ହଳିଆ—

ସମସ୍ତେ—"ଆସନ୍ତୁ, ଆସନ୍ତୁ ଆଜ୍ଞା" କହି ନମସ୍କାର କଲେ—
ବାହିନୀପତି ବିନୟରେ ପ୍ରତି ନମସ୍କାର ଜଣାଇଲେ ଏବଂ
ଚଉପାଢ଼ୀ ଉପରକୁ ଉଠି ବସିଲେ । ଅପର୍ତ୍ତି, ମାର୍କଣ୍ଡିଆ
ପାଖରେ ବସିଲା— )

ବାହିନୀପତି—ସବୁ କାମ ଚାଲିଛି ତ ?

ଝଂଗଡ଼ି—ଅଜ୍ଞା ହୁଁ— ଏଇକ୍ଷଣିକା ତ ଗସ୍ତି ଦେବତା ଆପଣଙ୍କୁ ଡାକିବାକୁ
ବାହାରି—ଥିଲେ—

ବାହିନୀପତି—ମହିଷ ଦୁଅର କୁ ଅଜିକାଲି ଦେବତାମାନେ ଡାକିବାକୁ
ଗଲେଣି ପରା । ଯା'ହଉ, ଲଞ୍ଚ ଖାଇ ଖାଇ ଦେବତା ମାନେ ବି
ଖବ୍ ପୋଷ୍ ମାନିଗଲେଣି—ନା— ( ହସି ଉଠିଲେ—
ସମସ୍ତଙ୍କ ଭିତରେ ଉଠିଲା ଗୋଟାଏ ହସର ଲହଡ଼ି ) ହଉ,
ତମ କଟେସ୍ କେତେଦୂର ଆଗେଇଲାଣି ?

ପିଣ୍ଟୁ—ଆଜ୍ଞା ସରିବା ଉପରେ ଆସି ହେଲାଣି । କଥାଟା ତ ସାମିତ
କିଛି ନୁହେଁ—ମାମୁଲି କଥା—ପଦ ପଦକେ ଛାଡ଼ିଗଲା ।

ବାହିନୀପତି—କାହା କଥା କହୁଛ ? ଖେବନ ପାଣିଙ୍କ କେସ୍ ତ ?

ନକଡ଼ି—ଆଜ୍ଞା—ହଁ—

ବାହିନୀପତି—ଶସ୍ତୁରରେ କଣ ସ୍ଥିଏ ଟିଳିଲା ?

ବାବନ—ଆଜ୍ଞା, ଆପଣେ ମତ୍ତଗଜପୁଦର ସିଂହ ଦରିଜା—ଆଉ
ସ୍ଥିଏ ଦରୁ ଆମେ ହେଲେ, ଅଳିଆ ଭୁଟେଇ କଥାଟାକୁ
ସାରଭଙ୍ଗ କରିଦେଇଛୁ ।

ଘଣ୍ଟି—ଅଜ୍ଞା, ଉପରୁ ହୁକୁମ ହେଲା ଯେ ଖେବନ ପାଣିକୁ ନିଆଁ ପାଣି,
ଧୋବା ଭଣ୍ଡାରୀ, ଘରଦୁଆର, କୁଣିଆ ମଇତ୍ର ସବୁ ବନ୍ଦ—

ବାହିନୀପତି—ତା' ମାନେ—ମୋଟ କଥାରେ ବାସନ୍ଦ—ନା—?

ନକଡ଼ି—ଆଜ୍ଞା ହଁ—ଅଗତ୍ୟା କରିବାକୁ ପଡ଼ିଲା—ନ କଲେ ଚଳୁନାହିଁ—ଦେଖୁଛନ୍ତି, ଦିନକୁ ଦିନ ଗିମେତ ଅନାଚାର··· ଅତ୍ୟାଚାର···

ବାହିନୀପତି—ଓ ଉ, ବୁଝିଲି—ଆଚ୍ଛା, ପାଣିଏ ତାଙ୍କର ବଳରେ ନଚେ ହଳ କରୁଥିଲେ—ଏତକ ତାଙ୍କର ଅପରାଧ, ନା କଣ ?

ଝଗଡ଼ି—ଆଜ୍ଞା ହଁ—ଦେଖନ୍ତୁ ତ, କେତେ କଥା ନାଏ ନ କଲେ—ଆମେ ଶାସନୀ ବ୍ରାହ୍ମଣ ।

ବାହିନୀପତି—ଅତଏବ, ଆମେ ସମସ୍ତଙ୍କୁ ଉଚିତ ଶାସନ କରି କରି ଆମର ବଂଶ—ବୁଡ଼େଇବୁଁ—ମେଣ୍ଢା ପୋଉଁ ଧୋର୍ଡ଼ ନବାଳ—

ମେଛୁ—ଆଜ୍ଞା, କଣ କରିବା—ନ କଲେ ଯେ ଡେଟେଣି କୁଳ ଉଚ୍ଛନ୍ନ ହେଇଯଉଛି । ଆମ ବଡ଼ପଣ ଅମେ ନ ରଖିଲେ ଛତଣ ପଠକ ଆମକୁ ମାନିବେ କାଇଁକି ? ଶୁଦ୍ରର କର୍ମ କରି ଆମେ କଣ ଇହକାଳ ପରକାଳ ସବୁ ସରିବୁ—ପିତୃ ପୁରୁଷଙ୍କୁ ଘୋର ନର୍କ ଘଣ୍ଟେଇବୁ—ଆମର ମାନ ଗଲା···ମର୍ଯ୍ୟାଦା···

ବାହିନୀପତି—ଆହାଃ···ହାଃ ହାଃ—କଣ ଗୁଡ଼ାଏ ବକି ଯାଉଛ ମହାପାଣେ—"ଆମେ" ବୋଇଲେ, ତୁମେ କାହାକୁ ବୁଝଉଛ ? ଏଇ ଯେତେଜଣ ପଞ୍ଚ ପରମେଶ୍ୱର—ହେଇ ବସିଛ—ଯେତକ ? ନା—ସମସ୍ତ ପଶ୍ଚିମ ଶାସନ ବ୍ରାହ୍ମଣ ପଡ଼ା ଗୋଟାକୁ କାହାକୁ ?

ନକଡ଼ି—ନା—ନା—ଆଜ୍ଞା—ଆମର ହୋଲ୍ ଶାସନଟାକୁ କହୁଛୁଁ ନାଁ ।

ବାହିନୀପତି—ବେଶ୍, ଆମ ଶାସନ ଭିତରେ ଯେ ବନ ପାଣି ତ ଆମରି ଜଣେ ଭାଇ ଆମ ଗୋଷ୍ଠୀ ଭିତରୁ ତାହାକୁ ଅଲଗା କରିଦେବା ଦ୍ୱାରା ଆମେ ଆମର ଜଣକୁ ହାରେଇଲୁ—ନିହାତି ଅଭାବଗ୍ରସ୍ତ ହେବାରୁ ସିନା ତାର ଏମିତି ଦୁରବସ୍ଥା ହେଲା—ଯେ ସେ ଆମ ବିଚାରରେ ଆଜି ଏଡ଼େ ବଡ଼ ଅପରାଧରେ ଅଭିଯୁକ୍ତ

ଦେଲା । ଆମେ ତାହାର ଆହୁରି ଅଧୋଗତ ଦେଖିବା ପାଇ ଆମଠାରୁ ସମ୍ପୂର୍ଣ୍ଣ ପୃଥକ କରିଦେଲୁ । ସେ ବର୍ତ୍ତମାନ ହାଡ଼ି ବାଉରୀ ଘରେ ଖାଇପାରେ—ପାଣ ସାଙ୍ଗରେ ମିଶି ହଳ କରିପାରେ—ଇତର ଜାତ ଘରେ ଗତର ଖଟେଇ ମଜୁରୀ ଆଣିପାରେ, ନ ହେଲେ ବଞ୍ଚିବ କିପରି ? ବେଶ୍, ଆମେ ସେଥିପାଇଁ ଦାୟୀ ନୋହୁ । ତଥାପି ସେ ତ ପଶ୍ଚିମ ଶାସନର ବ୍ରାହ୍ମଣ ଆଉ ଆମରି ଭାଇ ବୋଲି ପରିଚୟ ଦେବ । ମୁଁ ଏତକବେଳେ ଗୋଟିଏ ପ୍ରଶ୍ନ ପଚାରୁଛି ଯେ ତାର ଦୁଷ୍କର୍ମ ଦ୍ୱାରା ବର୍ତ୍ତମାନ ଆମକୁ ଯେତକ ବାଧୁଛି, ସେତେବେଳେ ଯା ଠଉଁ ବେଶି ବାଧିବ କ ନାହିଁ କହିଲ ?

ହଂଗଡ଼ି—ଅଙ୍ଗା, ତା ସହିତ ଆମର ଆଉ କ ସମନ୍ଧ ? ବିଟାଳ ହେଲା ଯେ ସେ ଅଛୁବ ଜାତ ସାଙ୍ଗେ ସମାନ । ଆମେ ତାକୁ ଆଉ ଅନେଇବୁ କାହିଁକି ଯେ ଆମକୁ ବାଧିବ ? ( ନେପଥ୍ୟେ କାନ୍ଦଣାର କ୍ଷୀଣ ସ୍ୱର ଭାସି ଆସଲା )

ବାହିନୀପତି—କେମନ୍ତ୍ ବ ? ତୁମ ମାମୁଁ ଘର ବାଲେଇଟିକୁ ଯେବେ ଧେବା ସାହିର କୁକୁର କାମୁଡ଼ିବାକୁ ଗୋଡ଼େଇ ଆସୁଛି, ତମକୁ ବାଧୁଛି । ସେ ତ ସହଜେ ପଶିଷ, ଆମ—ସାଙ୍ଗରେ ୨୫।୩୦ ବର୍ଷ ଚଳି ଆସିଛି, ପୁଣି ଆମରି···

ବାବନ—ଅଙ୍ଗା, ହଁ, ହଁ—ଏକାକ୍ରେ—କୁଳର ପୁଅଟା, ବାଧିବ ନାହିଁ କମିତ ?

ବାହିନୀପତି—ଅଚ୍ଛା, ବେଶ୍, ଏଇ ନସ୍ୱ, ନିଃସହାୟ ଅବସ୍ଥାରେ ତା'ର ଅପରାଧ ପାଇଁ ଆମେ ଯେଉଁ ଦଣ୍ଡ ଦେଇଛୁ । ଆମ ବିଚାରରେ ସେଇଟା ତା' ପାଇଁ ଉପଯୁକ୍ତ ଦଣ୍ଡ । ଆମର ଏହି ଦଣ୍ଡ ବ୍ୟବସ୍ଥା ଦ୍ୱାରା ତାର ଅବସ୍ଥା ଯେତେବେଳେ ଆହୁରି ଚୁରିଗୁଣ ଚଳି ପଡ଼ିବ, ସେଥିପାଇଁ ଆମକୁ କ ଦଣ୍ଡ ମିଳିବ ?

ମିଛୁ—ଆଜ୍ଞା, ତା' ହେଲେ ଶାସ୍ତ୍ର କାଇଁକ କହିଲା— "ସର୍ବନାଶ ସମୁତ୍ପନ୍ନେ ଅର୍ଦ୍ଧଂ ତ୍ୟଜନ୍ତି ପଣ୍ଡିତାଃ—"

ବାହିନୀପତି—ଏଠେଇଁ ତ କାହାରି ସର୍ବନାଶ ହୋଇ ନାହିଁ । ସର୍ବନାଶ ହେବାର ଆଶଙ୍କା ଥିଲେ ମଧ୍ୟ ଜଣ ଜଣଙ୍କର ମୁଣ୍ଡଟା ରଖି ଗଣ୍ଡିଟା ତ୍ୟାଗ କଲେ କମ୍ବା ଗଣ୍ଡିଟା ରଖି ମୁଣ୍ଡଟାକୁ ବାଦ୍ ଦେଲେ, କୌଣସି କାର୍ଯ୍ୟରେ ଆସିବ ? ନା, ନା—ଜାଣି ଜାଣି ଆମେ ବଡ଼ ଭୁଲ୍ କରୁଛେ - ଏ ସବୁ ଅନ୍ଧ ରୁଢ଼ୀମଣା ଆମକୁ ଗ୍ରାସି ଦେବାକୁ ପଡ଼ିବ—ଆମ ସମାଜ ଆମ ଶାସନ ବୋଲି କହି ଆମେ ଗର୍ବ ବା ଗୌରବ ଅନୁଭବ କରୁଛୁଁ, ତାହା ଏପରି ଦୁର୍ବୋଧ୍ୟର ଦ୍ୱାରା ଦିନକୁ ଦିନ ଦୁର୍ବଳ ଆଉ ଶିଥିଳ ହୋଇ ପଡ଼ୁଛି । ଆଚ୍ଛା ମୁଁ ପଚାରୁଛି, ଆମର ସ୍ୱଜାତି ଭାଇ ସେହି ଭୋଟନୀ ପାଣି ଯେତେବେଳେ କ୍ରମେ ନିଃସ୍ୱ ହୋଇ ଭିକାରୀଙ୍କ ପରି ପେଟ ଦେଖାଇ ବୁଲିଲା; ସେତେବେଳେ ତା'ର ଦୁରବସ୍ଥା କମିତ ସୁଧୁରିବ, ସେଥିପାଇଁ କେହି ସ୍ୱଜାତି ହିତୈଷୀ ଏହି ପଞ୍ଚକୁ ଡକାଇ ତା ପାଇଁ ସୁପାରିଶ୍ ବା ସୁବ୍ୟବସ୍ଥା କରିଥିଲେ କି ?

ସମସ୍ତେ—( ନୀରବ )—

ବାହିନୀପତି—ନାଃ, ତା' କେହି କରି ନାହାନ୍ତି । କେବଳ ଜଣକୁ ଦୋଷୀ ବୋଲି ସାବ୍ୟସ୍ତ କରି ଗୁରୁତର ଦଣ୍ଡ ଦେବା ବେଳକୁ ଆମେ ସବୁ ଏକଜୁଟ ହୋଇ ପାରୁଛୁଁ । ଭାବି ଦେଖିଲ, ଏହା କଣ ଆମର ନିରପେକ୍ଷ ବିଚାର । ବାହ୍ମଣ କାହାରି ଶାସିତ ନୁହେଁ—କିନ୍ତୁ ବ୍ରାହ୍ମଣର ଶାସନ । ତାହାର ଆଦର୍ଶରେ ଅନୁପ୍ରାଣିତ ହୋଇ ସମସ୍ତ ଗ୍ରାମ—ଏପରି କି ସମଗ୍ର ରାଜ୍ୟ ପରିଚାଳିତ ହୁଏ ବୋଲି ତାହାର ଆସନ ସବୁଠାରୁ ଉଚ୍ଚରେ ।

ନକଡ଼ି—ନିଶ୍ଚେ—ନିଶ୍ଚେ—ଆଜ୍ଞା, ଏଇ ଚଉଦ ବ୍ରହ୍ମାଣ୍ଡରେ ବ୍ରାହ୍ମଣର ବ୍ରହ୍ମତେଜ କଣ ନ କରିଛି । ଆପଣ ଅବୋ

ଭୁଲ କହୁ ନାହାନ୍ତି । ତେବେ···ଆଜ୍ଞା, ଏହି ସେବକ
ପାଣିର କେଣ୍ କଣ ହବ ?

ବାହିଙ୍ଗାପତ—ଦେଖ ସାନ୍ତ୍ୱଏ, ସେବକ ପାଣି ମଣିଷ ମାରି ନାହିଁ, ଚୋରି ନାଗ୍ରୀ କରି ନାହିଁ, କାହାରି ସମ୍ପତ୍ତି ମାରି ଖାଇ ଯାଇ ନାହିଁ କମ୍ବା କାହାରି ସହିତ ଶତ୍ରୁତା କରି ନାହିଁ । ସେ ତା'ର ନିଜ ଗଳରେ ନିଜେ ହଳ କରିଛି—ମୋ ବସ୍ତିରେ···ଏଥିରେ ତା'ର କିଛି ଦୋଷ ନାହିଁ ।

ନକଡ଼ି— ଆପଣଙ୍କ ଭଲ ଲୋକ, କଣ କହୁଛନ୍ତି ଆଜ୍ଞା ?

ମିଚ୍ଛୁ—ଭାଇ କଣ ଓଲଟି ଗଲା କି ?

ଝଂଗଡ଼ି—ଆଜ୍ଞା, ଏଠେଇଁ ଭାଗବତ ଗାଦା ଗୋପେଇ ବାଜେ କରିଛନ୍ତି ପରା ।

ବାହିଙ୍ଗାପତ—ଓହୋଃ, ଥୟ୍ୟ ଧର; ମୋର କଥା ସରିବା ଯାଏ ଟିକିଏ ଅପେକ୍ଷା କର—ହଳ—କରିବାଟକୁ ତୁମେମାନେ ନୀଚ କର୍ମ ବା ନୀଚ ଇତର କର୍ମ ବୋଲି କାହିଁକି ଭାବୁଛ ଯେ ମୁଁ ଦୃଢ଼ତାର ସହିତ କହିପାରେ, ଆଦମ ଯୁଗରେ କେବଳ ଆର୍ଯ୍ୟମାନେହିଁ କୃଷିକର୍ମ କରୁଥିଲେ । ଆମର ପୂର୍ବ ପୁରୁଷ କୃଷିକର୍ମରେ ଖବ୍ ପ୍ରବୀଣ ଥିଲେ । ସନାତନ ମୁନି ଋଷିମାନେ କୃଷିର ପ୍ରାରମ୍ଭିକ ଆଉ କୃଷି ବିଜ୍ଞାନର ଉନ୍ନତ-କାରକ ଥିଲେ ।

ବାବନ—କଣ କହୁଛନ୍ତି ଅଜ୍ଞା ?

ବାହିଙ୍ଗାପତ—ମୋତେ ପଗ୍ଭର—ପ୍ରମାଣ କରି ବୁଝେଇ ଦେବା ପାଇଁ,

ପଣି— ଆଜ୍ଞା—ଆଜ୍ଞା— ସେତିକ ତ ବୁଝି

ବାହିଙ୍ଗାପତ— ବେଶ୍, ଅମେମାନେ ଆର୍ଯ୍ୟ ସନ୍ତାନ ବୋଲି ଆପଣାର ପରିଚୟ ଦେଉଥିବାରୁ ତ ବୃଷ କାମଟାକୁ ଇତର ବା ନୀଚ

ଜାତକ୍ କର୍ମ ବୋଲି ଘୃଣାରେ ଉପେକ୍ଷା—କରୁଛୁଁ । ଅଚ୍ଛା, ବର୍ତ୍ତମାନ ଦେଖାଯାଉ, ଏଇ "ଆର୍ଯ୍ୟ" ଶବ୍ଦଟି କଣ ?—ତାର ଉତ୍ପତ୍ତି କପରି ହେଲା—ସଂସ୍କୃତ ଭାଷାରେ ର ଧାତୁରୁ ଅର୍ ଶବ୍ଦର ଉତ୍ପତ୍ତି ଆଉ ଏଇ ଅର୍ ଶବ୍ଦରୁ ଅର୍ଯ୍ୟ ବା ଆର୍ଯ୍ୟ ଶବ୍ଦର ଜନ୍ମ । "ଅର୍" ଶବ୍ଦଟି ହଳ ବା କୃଷି ଶବ୍ଦ ବାଚକ । ହିନ୍ଦୁଧର୍ମାବଲମ୍ବୀ ଲୋକମାନେହିଁ ପ୍ରାଚୀନ କାଳରେ ଆର୍ଯ୍ୟ ନାମରେ ପରିଚିତ ହେଉଥିଲେ । ଋକ୍‌ବେଦ—ସଂହିତାର ଅଷ୍ଟମ ଋକ୍ ପଢ଼ିଲେ ଜଣା ପଡ଼ିବ ଯେ ଏହି ଆର୍ଯ୍ୟ ଶବ୍ଦ ବୈଦିକ ଯୁଗରୁ ପ୍ରଚଳିତ ହୋଇ ଆସୁଛି । ଆର୍ଯ୍ୟମାନଙ୍କର ପ୍ରଧାନ ସେତ ଆର୍ଯ୍ୟାବର୍ତ୍ତ । ମନୁ ସଂହିତାରେ ଆର୍ଯ୍ୟାବର୍ତ୍ତର ସୀମା ନିର୍ଣ୍ଣୟ କରା ଯାଇଛି ଯେ :—

"ଆସମୁଦ୍ରାତ୍ତୁ ଯେ ପୂର୍ବାତ୍ ସମୁଦ୍ରାତ୍ତୁ ପଶ୍ଚିମାତ୍
ତୟୋରେବାନ୍ତରଂ ଗିର୍ଯ୍ୟୋରାର୍ଯ୍ୟାବର୍ତ୍ତଂ ବିଦୁର୍ବୁଧାଃ ।"

ଉତ୍ତରରେ ହିମାଳୟ ପର୍ବତ, ଦକ୍ଷିଣରେ ବିନ୍ଧ୍ୟାଚଳ, ପୂର୍ବରେ ପୂର୍ବ ସମୁଦ୍ର, ଆଉ ପଶ୍ଚିମରେ ପଶ୍ଚିମ ସମୁଦ୍ର; ଏମାନଙ୍କର ମଧ୍ୟବର୍ତ୍ତୀ ଭୂଭାଗ ହେଉଛି ଆର୍ଯ୍ୟାବର୍ତ୍ତ ।

ଝଂଗଡ଼ି—ଅଜ୍ଞା, ପ୍ରତିପାଦ୍ୟ ବିଷୟ ବସ୍ତୁଟାରୁ ଦୂରକୁ ଗ୍ଲାଇଡ଼ କରୁଛନ୍ତି ।

ବାହିନୀପତି—ବୁଝିଲ ଭଦ୍ରେ, ସାଧାରଣଙ୍କୁ ବୁଝାଇବାକୁ ହେଲେ ଟିକେ ଅବତାରଣା ଦରକାର, ନାକଟାକୁ ଟାଣିଲେ ମୁଣ୍ଡଟା ଆପଣ ଛୁଏଁ ଘେଞ୍ଚାରି ହୋଇ ଆସିବ ନାହିଁ ?

ବାବନା—ନିଶ୍ଚେ, ନିଶ୍ଚେ. ଆଜ୍ଞା—ଆପଣ କହନ୍ତୁ, ଆପଣ କହନ୍ତୁ ।...

ବାହିନୀପତି—ହଁ, ଏଇ ଆର୍ଯ୍ୟାବର୍ତ୍ତ ଓ ତାହାର ସୀମାକୁ ଚିହ୍ନାଇ ଦେବା ଉଦ୍ଦେଶ୍ୟ ହେଉଛି ଯେ ଗଙ୍ଗାନଦୀର ଅବବାହିକାରେ ଗଠିତ ହୋଇଥିବାରୁ ଏହି ସ୍ଥାନର ମାଟି ଖୁବ ଉର୍ବର । ତେଣୁ ଆର୍ଯ୍ୟମାନେ ତାହାକୁ କୃଷି ଉତ୍ପାଦନର ସର୍ବୋତ୍କୃଷ୍ଟ ସ୍ଥାନ ବୋଲି ନିର୍ବାଚନ କରି ଏପରି ଭାବରେ କୃଷିକାର୍ଯ୍ୟର ନୈପୁଣ୍ୟ ଦେଖାଇଲେ ଯେ ସମଗ୍ର ପୃଥିବୀରେ ଭାରତ ସ୍ୱର୍ଣ୍ଣ-

ପ୍ରସୁ ନାମରେ ବିଖ୍ୟାତ ଆଉ ଲୋଭନୀୟ ହେଲା । ହାଇହେ ମିଛୁ ପହାପାନେ, ଭାରତରେ ସୁନା ଫଳେ ବୋଲି ତ ସମସ୍ତେ କହନ୍ତି, ସେହି ସୁନାଟା କଣ ?

ମିଛୁ—ଆଜ୍ଞା, ଆମର ଏଇ ଶସ୍ୟ—ଆଉ ସତରେ କଅଣ ଗଛରେ ସୁନା ଫଳେ ନା ଫଳିବ ?

ବାହିନୀପତି—ହଁ, ତା'ହେଲେ ଏଥିରୁ ସ୍ପଷ୍ଟ ବୁଝି ଯାଉଛି ଯେ, ଆର୍ଯ୍ୟମାନେ ଉନ୍ନତଧରଣର କୃଷିଦ୍ୱାରା ଏତେ ବେଶୀ ଶସ୍ୟ ଆମଦାନୀ କଲେ ଯେ ସେହି ଶସ୍ୟ ବା ତାହାର ବିନିମୟରେ ଭାରତ ସବୁ ଦେଶଠାରୁ ସମୃଦ୍ଧିଶାଳୀ ଆଉ ଷଡୈଶ୍ୱର୍ଯ୍ୟରେ ପରିପୂର୍ଣ୍ଣା ହେଲା । ଏଗୁଡ଼ିକ ଆଲୋଚନା କରିବାର ମୂଳ ଲକ୍ଷ୍ୟ କ'ଣ ବୁଝି ପାରୁଛତ ସାଆନ୍ତସବୁ ?

ନକଡ଼ି—ଆଜ୍ଞା ହଁ, ଯେଉଁ ଭାରତ କୃଷିବିଦ୍ୟା ବଳରେ ପୃଥିବୀରେ ସର୍ବଶ୍ରେଷ୍ଠ ବୋଲି ବିବେଚିତ ହେଲା, ସେହି ଦେଶର ପ୍ରାୟ ସମସ୍ତ ଆଦିମ ଅଧିବାସୀ ପ୍ରଧାନତଃ କୃଷିଜୀବୀ ହୋଇ ଥିବେ ।

ବାହିନୀପତି—ହୋଇଥିବେ କାହିଁକି ହେ ? ନିଶ୍ଚୟ କୃଷିଜୀବୀ । ଏଥିରେ ଆଉ ସନ୍ଦେହ ଅଛି ? ଆମର ପ୍ରାଚୀନ ଆର୍ଯ୍ୟଋଷି ମାନେ, ଯେଉଁମାନେ କି ଦେବତାପରି ଚିରକାଳ ପୂଜା ପାଉଛନ୍ତି । ଯାହାଙ୍କର ଗୁଣ ଆଉ ବିଦ୍ୟାର ଆଲୋକ ସାତ ସମୁଦ୍ର ତେର ନଈ ପାର ହୋଇ ଯାଇ ଇଉରୋପ ଆଉ ଆମେରିକା ପ୍ରଭୃତି ଦେଶକୁ ଆଲୋକିତ କରୁଛି; ସେହି ପରମ ପଣ୍ଡିତ ତ୍ରିକାଳଜ୍ଞ ଅଦ୍ଭୁତ ଶକ୍ତିଶାଳୀ ଋଷିମାନେ ନିଜ ନିଜ ହାତରେ ହଳ କରୁଥିଲେ ।

ଗଣି—ଆଜ୍ଞା, ଏମାନେ ସବୁ କଣ ଆମରି ବ୍ରାହ୍ମଣ ।

ବାହିନୀପତି—ଆମେ କି ବ୍ରାହ୍ମଣ ହେ । ଆମର ପିତା, ପିତାମହ, ପ୍ରପିତାମହ ବ୍ରାହ୍ମଣ, ଆମେ ତାଙ୍କଠାରୁ ଜନ୍ମ—ଅତଏବ

ଆମ୍ଭେ ବ୍ରାହ୍ମଣ । ଏହି ପାରମ୍ପରିକ ଉକ୍ତିଟି ମାତ୍ର ଅମର ସମ୍ବଳ—କିନ୍ତୁ ସେମାନେ ତାଙ୍କର ଅସାଧାରଣ ଯୋଗ୍ୟତା ବଳରେ ପ୍ରକୃତ ବ୍ରାହ୍ମଣତ୍ୱ ହାସଲ କରିଥିଲେ । ଶାସ୍ତ୍ର କହୁଛି :—

"ଜନ୍ମନା ଜାୟତେ ଶୂଦ୍ରଃ ସଂସ୍କାରାଦ୍ ଦ୍ୱିଜ ଉଚ୍ୟତେ,
ବେଦାଭ୍ୟାସାତ୍ ଭବେତ୍ ବିପ୍ରୋ ବ୍ରହ୍ମ ଜାନାତି ବ୍ରାହ୍ମଣଃ ।"

ଅର୍ଥାତ୍ ସମସ୍ତେ ଜନ୍ମରେ ଶୂଦ୍ର, ସଂସ୍କାର ଅନ୍ତେ ହେଲେ,ଦ୍ୱିଜ ବେଦ ପାଠ କଲେ—ବିପ୍ର, ଆଉ ବ୍ରହ୍ମଜ୍ଞାନ, ଅର୍ଥାତ ଶ୍ରେଷ୍ଠ ଜ୍ଞାନ ଲଭ କରି ବାହ୍ମଣ ବୋଲନ୍ତି । ପୁଣି—ଏହା ଉପରକୁ ଯାହାଙ୍କଠାରୁ ବିଦ୍ୟା, ସତ୍ୟ, ତପଃ ଓ ଶ୍ରୁତ ସମ୍ୟକ୍ ରୂପେ ନିରୂପିତ ହୁଏ, ସେଇମାନେ ହେଉଁଛନ୍ତି ଋଷି । ଋଷି ପୁଣି ସାତ ପ୍ରକାର:—ଶ୍ରୁତର୍ଷି, କାଣ୍ଡର୍ଷି, ପରମର୍ଷି, ମହର୍ଷି, ରାଜର୍ଷି, ବ୍ରହ୍ମର୍ଷି ଆଉ ଦେବର୍ଷି । ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ କରି ବୁଝାଇବାକୁ ଗଲେ—

ବାବନ—ଦରକାର ନାହିଁ ଆଜ୍ଞା, ଆପଣ ତେଣିକି ଆଉ ବଢ଼ନ୍ତୁ ନାହିଁ ।

ବାହିନୀପତି—ଆଚ୍ଛା ହେଉ, ଆମର ଋଷିମାନଙ୍କ ମଧ୍ୟରେ ବ୍ରହ୍ମର୍ଷି ବଶିଷ୍ଠ, ମହର୍ଷି ପରାଶର, ରାଜର୍ଷି ଜନକ ଅଉ ବ୍ରହ୍ମର୍ଷି ବିଶ୍ୱାମିତ୍ର ବିଖ୍ୟାତ ଆର୍ଯ୍ୟ ଚଷା ଥିଲେ—କୃଷି ବିଦ୍ୟାରେ ଏମାନେ ସମସ୍ତେ ଧୁରନ୍ଧର । ଆଚ୍ଛା, ଏ କଥାଟିତ ଜାଣିଥିବ:—
"ଅଥ ମେ କୃଷତଃ କ୍ଷେତ୍ରଂ ଲାଙ୍ଗଲା ଦୁତ୍ଥିତା ତତଃ,
କ୍ଷେତ୍ରଂ ଶୋଧୟତା ଲବ୍ଧା ନାମ୍ନା ସୀତେତି ବିଶ୍ରୁତା ॥"
ରାଜର୍ଷି ଜନକ ଯଜ୍ଞଭୂମି କର୍ଷଣ କରିବା ସମୟରେ ଶ୍ରୀରାମପତ୍ନୀ ବୈଦେହୀ ସେହି ଭୂମି ମଧ୍ୟରୁ ବାହାରି ଥିଲେ । ସେଥିପାଇଁ ତାଙ୍କର ନାଁ ଦିଆଗଲା ସୀତା ।

ଝଗଡ଼ି—ଆଜ୍ଞା, ହଁ—ସେ ତ ଜଣାଶୁଣା କଥା—

ବାହୀନୀପତି—ବେଶ, ଆହୁରି ମଧ୍ୟ ଜାଣିଥିବ, ଶ୍ରୀକୃଷ୍ଣଙ୍କ ବଡ଼ଭାଇ ବଳଦେବ (ବଳରାମ) ଯେ କି କୋଟି ସିଂହ ପରାକ୍ରମୀ, ଦ୍ୱାରକାର ରାଜା, ସେ ମଧ୍ୟ ସ୍ୱହସ୍ତରେ ହଳ କରୁଥିଲେ ।

ମିଚ୍ଛୁ—ଅଜ୍ଞା, ଜାଣେ—ସେଥିପାଇଁ ତାଙ୍କର ଅଉ ଗୋଟିଏ ନାଁ ହଳଧର ।

ବାହିନୀପତି - କେବଳ ସେତିକି ନୁହେଁ, ଅର୍ଯ୍ୟମାନେ ଯେ ଆଦର୍ଶ କୃଷିବିଦ୍ୟାବିତ୍ ହେବା ଉଚିତ, ଜଗତ ସମକ୍ଷରେ ପ୍ରମାଣ କରିବା ପାଇଁ ଲଙ୍ଗଳର ମହାତ୍ମ୍ୟ, କାର୍ଯ୍ୟକାରିତା, ଉପଯୋଗିତା ବିଶ୍ୱରେ ପ୍ରଚାର କରିବା ପାଇଁ ସେ ଗର୍ବର ସହିତ ଲଙ୍ଗଳକୁ କାନ୍ଧରେ ପକାଇ ନିଜର ଆୟୁଧ ରୂପେ ବ୍ୟବହାର କରୁଥିଲେ ।

ବାବନ—ଅଜ୍ଞା, ସେ ପରା ଲଙ୍ଗଳ ମୁନରେ ହସ୍ତିନା ଟାଣି ନେଇଥିଲେ ।

ବାହିନୀପତି - ଜାଣ ତ ? ଆହୁରି ଦେଖ, ଅମରି ବ୍ରହ୍ମର୍ଷି, ମହାମୁନି ପରାଶର ଜଣେ ଭାରି ଝାଣୁଆ ଚାଷୀ ଥିଲେ । ସେ କୃଷି ବିଦ୍ୟାରେ ବିଶେଷ ପାରଗ ଅଉ ବିଚକ୍ଷଣ ଥିଲେ । ସେ କହନ୍ତି—"କୃଷିର୍ଦ୍ଧନ୍ୟା କୃଷିର୍ମେଧ୍ୟା ଜନ୍ତୂନାଂ ଜୀବନଂ କୃଷି"—କୃଷିହିଁ ଧାନ୍ୟ ମାନଙ୍କର ଜୀବନ—ଏହା ତାଙ୍କର ଅର୍ଷ ବଚନ ଦ୍ୱାରା ସିଦ୍ଧାନ୍ତ ହୋଇଛି ।

ଭୁବନ ପଣ୍ଡା—(ନିଜ ପୋଥି ଦେଖାଇ) ଆଜ୍ଞା, ହେଇତ ପରା—ତାଙ୍କରି ଲେଖା "କୃଷି ପରାଶର" ଖଣ୍ଡିକ ଏଇଠିଣିକା ବୋଲି ହେଲାଣି ।

ବାହିନୀ ପତି—ହିଁ, ହିଁ—"କୃଷି ପରାଶର" ତାଙ୍କରି ଲେଖା—ତାହାକୁ ଓଡ଼ିଆରେ ଅନୁବାଦ କରାଯାଇଛି । ଆଚ୍ଛା, (କିଛିକ୍ଷଣ ଚିନ୍ତା କରି) ସେଇ ବହିର ପୃଷ୍ଠା ୧୧ ପୃଷ୍ଠାରେ କଣ ଲେଖା ଅଛି ପଢ଼ିଲ ।

ଭୁବନ ପଣ୍ଡା—(ପୃଷ୍ଠା ଲେଉଟାଇ) ଘୁଁ...ବୋଇଲ—

ଏବେ କହିବା କୃଷି କରଷଣ, ସୁବୁଦ୍ଧି ପାଠକଜନମାନେ ଶୁଣ ॥
କୃଷି ଶାସ୍ତ୍ର ଯେ ପରାଶର ଋଷି, ଜାଣି କହିଯାଇଛନ୍ତି ବିଶେଷି ॥
ଗୃହସ୍ଥ ଯେବେ କୃଷି ଦ୍ରବ୍ୟେକ, ଦେଖାଇ ଦେବେ ଫଳଇ ସୁବର୍ଣ୍ଣ ॥
ଅନ୍ତଃପୁରବାପ ଗୋଚରେଦେବ, ମାତାଙ୍କୁ ପାକଶାଳାରେ କହିବ

ବାହିଣୀପତି—ହେ, ରହ ଭୁବନ—କଅଣ ଯେଇଠି କହିଲ—
ଅନ୍ତଃପୁର...?

ଭୁବନ—ହଁା-- ଅଁ...ଅଁ...(ଅକ୍ଷି ବୁଲାଇ) ଅନ୍ତଃପୁର ବାପ ଗୋଚରେ
ଦେବ...

ବାହିଣୀପତି—କଥା କହିଲା ପରି ପଢ଼ିଯାଅ ହେ—

ଭୁବନ—ହଉ "ଅନ୍ତଃପୁର ବାପ ଗୋଚରେ ଦେବ, ମାତାଙ୍କୁ ପାକ-
ଶାଳରେ କହିବ ।"

ବାହିଣୀପତି—ହଁା—ବାପା ନେବେ ଟେକ୍ଟାଇଲ ଦପ୍ତର, ମା
ନେବେ ନୂଟ୍ରିଶନ ଦପ୍ତର—ଗଲା—ତା ପରେ...

ଭୁବନ—(ସ୍ୱରରେ) "ଗାଈ ବଳଦ ପଶୁ ଜନ୍ତୁ ମାନେ, ଏହା ସମର୍ପିବ
ସାମାନ୍ୟ ଜନେ ।"

ବାହିଣୀପତି—ବେଶ୍, ଗାଈ ବଳଦ ପ୍ରଭୃତି ପଶୁମାନଙ୍କୁ ସ୍କାଇର
ଚାକରଙ୍କ ଜିମା ଦେବ । ତା' ପରେ ପଢ଼—

ଭୁବନ—"କୃଷି ମାନ୍ଦ୍ୟ ଆପଣେ କରିବ । ହେଳା କଲେ ପ୍ରାନ୍ତେ ଦୁଃଖ
ପାଇବ ॥"

ବାହିଣୀପତି—ହଁ, ଏଇଠି ସେ କହିଛନ୍ତି—କିନ୍ତୁ କୃଷି କାର୍ଯ୍ୟଟି
ନିଜେ କରିବ । ସେଥିରେ ହେଳା କଲେ ପଛନ୍ତେ ଦୁଃଖ
ପାଇବ । ଆଚ୍ଛା ପଢ଼ିଯାଅ—

ଖିଚନ -- ଯୁଁ।···ଆଁ···ଆଁ···ବୋଇଲ···

ଗାଈ ବଳଦ କୃଷି ଆଦିକରି । ଯୁଁ।···ବିଦ୍ୟା ବାଣିଜ୍ୟ ନବ ଯୁବା ସ୍ତ୍ରିଯି ॥

ରଜାଆଦି ଯେ···ଏ···ତୀକ୍ଷ୍ଣ ଶସ୍ତ୍ରମାନ । ଯେବେ ନ କରି ଯ୍ୟା ଦଣ୍ଡେ ଅବଧାନ । ଯୁଁ।···କ୍ରମେ କ୍ରମେ ଯେ···ଏ··· ସର୍ବେ ନାଶ ଯାନ୍ତି । ଆପେ ବଥା ଲୋକେ ଦାଣ୍ଡେ ବାଛନ୍ତି ॥ ସମର୍ଥ ଲୋକ ଯେବେ କରେ କୃଷି । ଆପଣେ ହିଁ···ଇଁ···ଇଁ ସୁଖ ପରକୁ ପୋଷି ।
ସମର୍ଥ ହୋଇ ଯେ କୃଷି ଉପେକ୍ଷି । ଅସମର୍ଥ ସଙ୍ଗେ ଯ୍ୟା ତାହାକୁ ଲେଖି ।

ଭିକ୍ଷା ମାଗି ଆଣି ପୋଷଇ···ଯ୍ୟା···ପେଟ । ଆହାର ଅର୍ଥେ ନିତ୍ୟେ ଛଟପଟ ।

ବାହିନୀପତି — ବେଶ ବେଶ୍, ଖିଚନ — ସେତିକି ଥାଉ — ଅତି ସରଳ ଭାଷା, ବୁଝିବାକୁ କାହାରି ଅସୁବିଧା ହୋଇ ନ ଥିବ । ଆଉ ଗୋଟିଏ କଥା । ନିଜେ ଚିନ୍ତା କରି ଦେଖ, ପ୍ରାଣୀ ଜଗତରେ ସବୁଠାରୁ ବଡ଼ ସମସ୍ୟା ହେଉଛି — ଖାଦ୍ୟ ସମସ୍ୟା- ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ — ସମସ୍ତେ ସ୍ବତ ଚାହିଁଲେ ଖାଇବା ପାଇଁ ବ୍ୟାକୁଳ — ସବୁବେଳେ ଖାଦ୍ୟ ଅନ୍ୱେଷଣରେ ବ୍ୟାପୃତ — କେବଳ — "ଖାଇବା, ଜୀଇଁବା" ଏହି ଚିନ୍ତା ସମସ୍ତଙ୍କର ନା — କଣ କହୁନ' ରଥେ ?

ଝିଙ୍ଗଡି — ଆଜ୍ଞା, ସେଥିରେ ଆଉ ଭୁଲ୍ ଅଛି । ଭାଗବତରେ ଦାସେ କହିଲେ —

"ଏ ଜୀବ ଆହାର ଲମ୍ପଟେ । ବନ୍ଧନ ଭବ ସିନ୍ଧୁ ତଟେ ॥
ଯାବତ ନ ପୂରେ ଉଦର । ତାବତ ଜ୍ଞାନ କାହିଁ ମୋର ॥"

ବାହିନୀପତି — ଶୁଣ ରଥେ, ଆଜିକାଲିକା ପରି ଆଦିମ କାଳରେ ତ ଏମିତି ବାଣିଜ୍ୟ ବ୍ୟବସାୟ, ଅଫିସ କଚେରୀ, କଳ

କାରଖାନା, ମିଲ୍ କ ଗୋଦାମ ନ ଥିଲା । ଲୋକେ ମଧ ଏତେ ବେଶି ନ ଥିଲେ । ଯେତକ ଥିଲେ, ସେମାନେ ସମସ୍ତେ ସ୍ୱାଧୀନଚେତା ଆଉ ଆତ୍ମନିର୍ଭରଶୀଳ ଥିଲେ । ଯାହା କରୁ-ଥିଲେ ନିଜ ହାତେ ହାତେ, କୌଣସି କାମପାଇଁ ପର ହାତକୁ ଅନୁସରଣ କରୁ ନ ଥିଲେ । ତେଣୁ କୃଷି କର୍ମ ପାଇଁ ପର ହାତକୁ ଅନେଇ କାହିଁକି ଖୋସାମତ କରିବେ । କଣ ମିଛ କହିଲି ପଢ଼ିହାଣ୍ଡିଏ ।

ବାବନ – ନାଇଁ ଆଜ୍ଞା – ପାଠ କଇଲା—

"ଆପଣା ବାହୁର ବଳ ପରିମାଣି,
କରଇ ମନୁଷ୍ୟ ପଥରକୁ ପାଣି ॥"

ବାହିଣୀପତି—କ୍ରମେ କ୍ରମେ ଦେଶରେ ଲୋକ ସଂଖ୍ୟା ବୃଦ୍ଧି ହେଲା । ନାନା ପ୍ରକାର ଅର୍ଥକରୀ ପନ୍ଥା ଏବୁ ଖୋଲିଗଲା । ଲୋକେ ଚାକରୀ କରି, ବାଣିଜ୍ୟ, ବ୍ୟବସାୟ କରି, କଳ-କାରଖାନାର ମାଲିକ ମୂଲିଆ ହୋଇ ଅର୍ଥ ଉପାର୍ଜନ କଲେ । ସେହି ଅର୍ଥ ବିନିମୟରେ ଅନ୍ୟାନ୍ୟଙ୍କୁ ଖଟେଇ ଚାଷ କାମ କଲେ । ତାହାଦ୍ୱାରା ହେଲା କଣ ଜାଣିଛ ? କୃଷି ପ୍ରତି ସାର୍ବଜନୀନ ଦୃଷ୍ଟିଭଙ୍ଗୀର ଆଉ ଆଗ୍ରହ କମିଯିବାରୁ କର୍ଷିତ କ୍ଷେତ୍ର ଗୁଡ଼ିକର ଆୟତନ କ୍ରମେ ସଂକୀର୍ଣ୍ଣ ହୋଇ ଆସିଲା । ଅବହେଳାରେ ହଜାର-ହଜାର ବାଟି ଜମି ପଡ଼ିଆ ପଡ଼ି ଅନାବାଦୀ ହେତୁ ଜଙ୍ଗଲ ହୋଇଗଲା, ଆଚ୍ଛା, ବହୁ ପ୍ରକାର ଜାଙ୍ଗଲିକ ବଡ଼ବଡ଼ ବୃକ୍ଷ, ଲତା, ଗୁଳ୍ମ ଆଦିଦ୍ୱାରା ଭୂମି ସମାକୀର୍ଣ୍ଣ ହେବାରୁ କୋମଳ ଶସ୍ୟ ଉତ୍ପାଦିକା ଶକ୍ତି ଭୂମିର ଲୋପ ପାଇଲା । ଆହୁରି ମଧ ଯଥାର୍ଥ ଯତ୍ନ ଆଉ ଉପଯୁକ୍ତ ଅଭାବରୁ ଶସ୍ୟକ୍ଷେତ୍ର ସାର ହୀନ ହୋଇ କ୍ରମେ କ୍ରମେ ଅନୁର୍ବର ହୋଇ ପଡ଼ିଲା । ଫଳରେ ଦେଖ, ବର୍ତ୍ତମାନ ଟଙ୍କାକୁ ଆସି ଦୁଇ ସେର ଚାଉଳ—ହେଲାଣି —ଆହୁରି କଣ ହେବ, କିଏ କହିବ ।

ନକଡ଼ି—ସହର ବଜାରରେ ତ ଦେଢ଼ ସେର, ସେରେ ଛ'ଛଟଙ୍କି —ଆଜ୍ଞା, ସେ କଥା କଣ କହୁଛନ୍ତ—ଏ ବର୍ଷ ଶିଲବାଶିର ଅବସ୍ଥା ଯାହା. ବର୍ଷ ଯିମିତ ବାଦ ସାଧିଲଣି—ଏଥରକ ତ ନିଶ୍ଚୟ ଦୁର୍ଭିକ୍ଷ ପଡ଼ିବ—ପୃଥୀରେ କେତେ କ'ଣ ଉତ୍ପାତ ହେଉଛି ଦେଖନ୍ତୁ । ଆମର ତ ଘେର ଚଣ୍ଡାଳଠଉଁ ବଳି ପଡ଼ିବ । ଲୋକେ ଭେକ ଓପାସରେ ହାଇଁ ପାଇଁ ହେଇ—ଖାଲି ତାହାଙ୍କ କୁକୁର ପରି ଛକପକ ହେଲେଣି—କେତେ ସମ୍ଭାଳିବେ ?

ମିଚୁ—ଅଉ ସମ୍ଭାଳିବେ । ସମ୍ଭାଳିବାକୁ ପେଟରେ ନାହିଁ କି ପକେଟରେ ନାଇଁ ।

ବାହିନୀପତି—କୁଆଡ଼ୁ ଆସିବ ହେ ମହାପାତ୍ରେ ? ଆଜିକାଲିକା ପୁଅମାନେତ ଇମିତ କୁଳାଙ୍ଗାର ହେଲେ ଯେ ନିଜର ଟେଣ୍ଟକେ ଜମି କେତେ ଅଛି ପଗ୍ଭରିଲେ, ମୁହିଁକୁ ବଲ ବଲ କରି ଅନେଇବେ, ନିଜର ବିଲ କେଉଁଠୁ କେଉଁ ଯାଏ, ଚିହ୍ନି ନାହାନ୍ତି । ନିଜ ଲୁଗା, ଜାମା ଯୋଡ଼ା କାଦୁଅ ହେଇ ଯିବ ବୋଲି ବିଲ ଉପରକୁ ଯିବେ ନାହିଁ ।

ବାଚନ—ଆଜ୍ଞା, ପ୍ରକୃତ କଥା, କୁଳକ୍ଷୟ୍ର ବେଳକୁ କି ଘୋଡ଼ା ମୁହାଁ ପୁଅ ଯାକ ଜନ୍ମ ହେଲେ ଆଜ୍ଞା—ବୃଷ ନାଁ ଧଇଲେ ତାଙ୍କୁ ଇମିତ ଗନ୍ଧଉଛି ଯେ ସେମାନେ ନାକ ଟେକ ଟେକ ଭେଁଆଁ ମାରି ଚମ୍ପଟ କୁ'—

ବାହିନୀପତି—ଦେଖୁଛତ ପଡ଼ିହାରୀ ଏ, ତାହାହେଲେ କଣ କରଯିବ ? ଏଣିକ ଗୃଉଳ ଟଙ୍କାକୁ ଅଧସେର ହେଲେ ବି ମୂଢ଼ି, ଉଖୁଡ଼ା ପରି ମୁହଁରେ ଦି'ଟା ଫାଙ୍କି ଜଳଖିଆ କରି ପାଣି ଯେଟେ ପିଇ ଆମକୁ ରହିବାକୁ ପଡ଼ିବ । ଆମେ ଆମର ଅକାଳ କୁଷ୍ମାଣ୍ଡ ବଂଶଧର ଗୁଡ଼ିକକୁ ଇମିତ ତିଆରି କଲୁ ଯେ ସେମାନେ ମୁଣ୍ଡକୁ ହାତ ପାଇଲା ମାତ୍ରେ ବାବୁ ସାହେବ ବୋଲାଇଲେ । ଅଥଚ ଏ ପାଖର ବାବୁ ହେଲେ ନାହିଁ—

—କି ସେ ପାଖର ପାହେବ ହେଲେ ନାହିଁ । ଘାସକୁ ଲମ୍ବ, ପାଳକୁ ଶ୍ରେଷ୍ଠ ହୋଇ କେବଳ ବଡ଼ ବଡ଼—କଥାରେ ଲୋକଙ୍କୁ ଚିନ୍ତା କାଟିବା ଶିଖିଲେ । ଆମ ସମାଜର ଯେଉଁ କେତେକ—ଲୋକ ଗୃଷ କାମକୁ ନିଜ ନିଜର ବୃତ୍ତି ମନେ କରି ଖରା, ବର୍ଷା, କାକର ସହି କାଦୁଅ—ଘାଣ୍ଟି, ରକ୍ତ ପାଣିକରି ବାର ମାସ ଖଟିଲେ, ସେମାନେ ସବୁଦିନେ କଣ ଗମାର—ଥିବେ ? ସେମାନଙ୍କୁ ଠେଲିବା ପାଇଁ ମଧ୍ୟ ନେତା ମାନେ ପରିସ୍ଥିତି ସୃଷ୍ଟି କଲେ ।

ହଂଗଡ଼ି—ସେ କାଳ ପଖାଳ ସଇଲାଣି ଆଜ୍ଞା—ଏଣିକି ସେମାନେ ତ ଆମ କାନ କାଟି ନେବେ । ଏବେ ତ ତାଙ୍କର କେତେ ସଙ୍ଘ, ସମିତି—କେତେ ଦାବୀ, କେତେ ଆପତ୍ତି—ଠିକେ ଠିକେ କଥାରେ ପଟୁଆର, ଧର୍ମଘଟ—

ବାହିନୀପତି—ଠିକ୍ କହୁଛନ୍ତି ଯେମିତି ହେବା ଉଚିତ । ସେ ଜାତଟା ପୁରୁଷାନୁକ୍ରମେ ଖଟି—ବୋହି ବୋହି ବାସ୍ତବିକ ଖତର ହୋଇ ଖତ ପାଲଟି ଯାଇଥିଲା । କିନ୍ତୁ ବର୍ତ୍ତମାନ ସେହି ଖତ ସବୁ ଉତ୍କୃଷ୍ଟ ସାର ହୋଇ ସାରିଲାଣି । ସେଥିରୁ ନୂଆ ନୂଆ ଗଛ ସବୁ ବାହାରି ଯେମିତି ଦୁଆଁ ମେଲିଲେଣି, ଜଣା ଯାଉଛି, ସୁପ୍ରସନ୍ନା ସୌଭାଗ୍ୟ ଲକ୍ଷ୍ମୀଙ୍କ ଅମୃତ ଦୃଷ୍ଟିରେ ସେହିମାନେହିଁ ଅକ୍ଷୟ ସୁଖ ଶାନ୍ତି, ଧନଜନ ଗୋପଲକ୍ଷ୍ମୀର ପ୍ରକୃତ ଅଧିକାରୀ ହେବେ ।

ଗଣି—ଆଜ୍ଞା, ଅବାଟ ବାଟ ହବ, ଅଭୁଟ ଭୁଟ ହବ, ଅପାଠ ପାଠ ହବ—

ବାହିନୀପତି—ଦେବତା, ଏବେ ମେ ତ ମାଳିକା ଆରମ୍ଭ କଲଣି ହେ—ହଉ, ଶୁଣ,—ସର୍ବସାଧାରଣଙ୍କର ନିଜ ବଲବାରିପ୍ରତି ଏଇ ଅନାସ୍ଥାଭାବ ଦେଖି ବର୍ତ୍ତମାନ ଆମର ଲୋକ ପ୍ରିୟ ସରକାର ଇମିତି କଟକଣା ଖଞ୍ଜିଲେଣି ଯେ ଯେଉଁ ମାନେ ନିଜ ହାତରେ ନିଜ ଜମି ନ ଚଷିବେ କି ଜମିଜମାର ଖବର ନ ବୁଝିବେ,

ସେମାନେ ଜମିର ମାଲିକ ହୋଇ ପାରିବେ ନାହିଁ । ନିଜି ଗୃଷ ଯାହାର, ଜମି ରହିବ ତା'ର ।" ସନ୍ଥ ବିନୋବା ଜୀ— ମଧ୍ୟ ଏହି ବ୍ୟବସ୍ଥାର ମୂଳଦୁଆକୁ ମଜବୁତ୍ କରିବାରେ ଲାଗିଛନ୍ତି । ବର୍ତ୍ତମାନ ମୁଁ ଆମର ପଞ୍ଚପରମେଶ୍ୱରଙ୍କୁ ଜଣାଉଛି ଯେ ତୁମେ ଆମେ ପ୍ରତ୍ୟେକେ ଯେତେବେଳେ— ନିଜ ଜମିକୁ ଯାଇ ନିଜେ ହଳ କରିବୁ, ଖତ ବୋହିବୁ, ବିଲବାଛିବୁ ସେତେବେଳେ ଆମକୁ ବାଛନ୍ଦ କରିବ କିଏ ?

ବାବନ—ଆଜ୍ଞା, କରିଲେ କରିବ ସେଇଜଣେ, ଉପରେ ବସି ଯେ ଦାନବ୍ରତ କରୁଛି, ଆଉ କାଲି ବାଲି ପୁଅ କିଏ ?

ବହିଜୀପତି—ଆହେ, ସବୁ ତ ଭଗବାନଙ୍କ ଅଭିପ୍ରେତ, ତାଙ୍କର ଇଚ୍ଛା ବିନା କଣ ହେଲାଣି ନ ହେବ । ସବୁ ଯୁଗରେ ଦେଶ କାଳ ପାତ୍ର ବିବେଚନାରେ ଧର୍ମ ଅଉ ନୀତିର—ପରିବର୍ତ୍ତନ ଘଟେ ।

ଝିଗଡ଼ି—ଆଜ୍ଞା ହଁ—ଯେଉଁ ଆଡ଼୍ରୁ ପାଣି ଗ୍ରଷ୍ଠମାରେ, ଆମେ ପୁଣି ସେଇ ଆଡ଼କୁ ଛତା ଦେଖଉଛୁ ନା—

ବାହିନୀପତି—ପୁଣି ରାଜାନୁଗତ ଧର୍ମ । ପରିସ୍ଥିତି ଦୃଷ୍ଟିରେ ଯେଉଁ ନୀତି ପ୍ରବର୍ତ୍ତିଇଲେ ପ୍ରଜାମାନଙ୍କର ମଙ୍ଗଳ ଅବଶ୍ୟମ୍ଭାବୀ । ରାଜା ବା ସରକାର, ତାଙ୍କର ଦୂରଦର୍ଶୀତା ଆଉ ରାଜନୀତି ବଳରେ ତାହା ପ୍ରବର୍ତ୍ତିଇ ପାରନ୍ତି । ଏ କିଛି ନୂଆ କଥା ନୁହେଁ । ତେଣୁ—ଆଇନ କଟକଣାରେ ପଡ଼ି ଶାସନ ଦଣ୍ଡ ଭୟରେ ମାଷ୍ଟରଙ୍କ ଆଗରେ ଛାତ୍ର—ଛାତ୍ରୀ ପରି ସେହି କାର୍ଯ୍ୟ କରିବା ପୂର୍ବରୁ ସ୍ୱଇଚ୍ଛାରେ ଆତ୍ମମର୍ଯ୍ୟାଦା ବଜାୟ ରଖି ଆମେ କାହିଁକି ତାହା ନ କରିବା ?

ମିଚୁ—ଆଜ୍ଞା—ତା ଠିକ୍—ଏକ୍ ସଲାମ୍ ନାଇଁ ଶହେ ସଲାମ୍ ଯାଏ କଥା ଯିବ କାହିଁକି ?

ବାହିନୀପତି—ତେଣୁ ମୋର ଭାଇମାନଙ୍କୁ ଅନୁରୋଧ ଯେ ଆମେମାନେ ଆଗପଛ ନ ଭାବି —ଅଜ୍ଞାତ ବଶତଃ ଭୋବନ ପାଣିଙ୍କ ପ୍ରତି

ଯେଉଁ କଠୋର ଦଣ୍ଡ ବିଧାନ କରିଅଛନ୍ତି, ତାହା ଉଠାଇ ନିଆଯାଉ ଆଉ ତାହାଙ୍କୁ ଆମମାନଙ୍କ ସହିତ ଏକତ୍ର, ଏକ ଆସନରେ ବସିବାକୁ ଅଧିକାର ଦିଆଯାଉ ।

ସମସ୍ତେ—ଆଜ୍ଞା, ହଁ—ଏବେ ସେ ଆସନ୍ତୁ, ଆମର ଆଉ କୌଣସି ଆପତ୍ତି ନାହିଁ ।

ବାହିନୀପତି —( ସେବକ ପ୍ରତି ) ସାଣିଏ, ଉପରକୁ ଆସ ।

( ସେବକ କାନ୍ଦ କାନ୍ଦ ହୋଇ କୃତଜ୍ଞ ଭାବରେ ଅତି ସନ୍ତର୍ପଣରେ ଉପରକୁ ଆସି—ବାହିନୀପତିଙ୍କ ଗୋଡ଼ତଳେ ପଡ଼ି ଅନ୍ୟ ସମସ୍ତଙ୍କ ଓଳକ ହୋଇ ସମସ୍ତଙ୍କ ସହିତେ ବସିଲେ )

ବାହିନୀପତି—ବର୍ତ୍ତମାନ ଆମର ଏକାନ୍ତ କର୍ତ୍ତବ୍ୟ ହେଉଛି, ସମସ୍ତେ ମିଳିମିଶି ସାଣିଙ୍କର—ଦୁଃଖ ଦୁର୍ଦ୍ଦଶା ମୋଚନ ନିମିତ୍ତ ପ୍ରାଣପଣେ ଚେଷ୍ଟା କରିବା । ତାହେଲେ ଆମର—ସ୍ୱାଧୀନତା, ବଡ଼ପଣିଆ ଆଉ ଆମର ଶାସନର ସମ୍ମାନ, ଗୌରବ ଅକ୍ଷୁର୍ଣ୍ଣ ରହିବ ।

ସଣି—ନିଶ୍ଚେ, ନିଶ୍ଚେ,—ଆଜ୍ଞା ଆମେ ସାହାଯ୍ୟ କରିବୁ ।

ବାହିନୀପତି—ମୁଁ ମୋର ଲଙ୍ଗଳ, ବଳଦ, ହଳଆକୁ ସେବକଙ୍କୁ ଦେଇଛି । ତାଙ୍କର ହଳ କାମ ସରିବା ପର୍ଯ୍ୟନ୍ତ ସେଗୁଡ଼ିକ ଇଚ୍ଛା ଅନୁସାରେ ସାଣିଏ ବ୍ୟବହାର କରିପାରିବେ ।

ଖଡ଼ୁ—ଆଜ୍ଞା—ସେଦିନ ମୁଁ ଦେଖି କ ସବୁ ତାଙ୍କ କଣକ ଅସ୍ତମିତ୍ ହୋଇଗଲା । ମୁଁ—କଇଲି—କ,—ତାଙ୍କ କଣକ ବାବୁଘର ହଳଆ, ଲଙ୍ଗଳ, ବଅଲ କାଇଁ କ, ତାଙ୍କ କଣକ ସେବକ ସାଣି ବଲରେ—ବୋଧେ, ·ବାବୁ, ତାଙ୍କ କଣକ ଜମି ଖଣ୍ଡିକ ନେଲେଣି ।

( ସମସ୍ତଙ୍କ ମୁହଁରେ ହସ ଫୁଟି ଉଠିଲା )

ନକଡ଼ି—ହେଲଃ—ତା'ବଳରେ ଯାହା କିଛି ବାହନ ଦରକାର, ମୁଁ ଯୋଗେଇବି ।

ଝଗଡ଼ି—ଆଜ୍ଞା—ମୋ ହାଟରେ ଖତଯାକ ରହିଲା—ବଳ ଖଣ୍ଡକରେ ଯେତେ ଲାଗିବ, ମୁଁ ଦେବି ।

ଗଣି—ମୁଁ ତା'ବାଡ଼ି ଅଗଳରେ ବାଡ଼ ଘେରେଇ ଦେବି ଆଉ ବାଇ-ଗଣ, ଲଙ୍କା, ମକକା—କାକୁଡ଼ି, ଶିମ, ଆଉ ଆଉ ପନିପରିବା ଚଳି ଲଗେଇବାକୁ ଦେବି ।

ବାବନ—ମୁଁ ଏଇଥି ଶିକା ତା'ର ଚଳାଚଳର ଭାର ନଉଛି । ପାଣିଏ, ତୁମେ ତ ମାମୁଁ ମାଇଁ ଦି'ପ୍ରାଣୀ ଆଜିଠଉଁ ମୋ ଘରେ ଖିଆପିଆ କରିବ । ତୁମ ଘରେ ରୋଷାଇ କରି ଖାଇବାକୁ ଇଚ୍ଛାକଲେ ମଧ ମୁଁ ସବୁ ସରଞ୍ଜାମ ଯୋଗାଇ ଦେବି । ଯାହା କହିବ, ସବୁଥିରେ ମୁଁ ରାଜି ।

ବାହିନୀପତି—ଆଉ ପଧାନେ, ପାଣିଙ୍କ ପାଇଁ ତୁମେ କ ସାହାଯ୍ୟ କରିବ, କହିଲ ନାହିଁତ ?

ଖଡୁ—(ହାତଯୋଡ଼ି) ଆଜ୍ଞା, ମୁଁ କବା ନୋକ, ତାନଁା କଣକୁ, ଆପଣମାନଙ୍କର ଚରଣର ମଳିଠାଏ । ହଉ, ହେଲଃ—ମୁଁ ତାଙ୍କ ପାଖେ ପାଖେ ତାନଁା କଣକ ରହି ସବୁ କାମ—ଦେଖେଇ ଦେବି, ଶିଖେଇ ଦେବି । ଆଉ ତାନଁା କଣକ ଫସଲ ଉଠିବା ଯାକେ ଯାହା କିଛି ଯନ୍ତ୍ରର ପାଡ ଲୋଡ଼ା, ସବୁ ମୋ ଘରୁ ଯୋଗେଇବି । ତାନଁା କଣକ—ଓଳିଆ ମାରି ଧାନ ଗଣ୍ଡାକ ଘରେ ତୁଲେଇ ଦେବି । ଖଳାବାଡ଼ିରେ ତାନଁା କଣକ ଛଣଯାକ ବଦାଡ଼ି ମାରିଦେବି ।

ବାହିନୀପତି—ସାବାସ୍ ପଧାନେ, ଭଗବାନ୍ ନିଶ୍ଚୟ ତୁମର ମଙ୍ଗଳ କରିବେ ।

ମାର୍କଣ୍ଡିଆ—ଆଜ୍ଞା—ଆମେ ପୁରେଇତଙ୍କ ଘର ଛୁଆଣୀ କରିଦବୁ ।

ବାହ୍ନିଣୀପତି—(ତୃପ୍ତିର ମହୋଲ୍ଲାସରେ ଦୁଇଧାର ଆନନ୍ଦାଶ୍ରୁ ବହିଗଲା —ଯୁକ୍ତକରରେ ଊର୍ଦ୍ଧ୍ୱକୁ ଚାହିଁ ନିର୍ବାକ୍ ଚିତ୍ତରେ କହିଲେ ) ହେ ବିଶ୍ୱର ସ୍ରଷ୍ଟା, ତୁମେ ବିଶ୍ୱବ୍ୟାପୀ, ବିରାଟ ତୁମର ସୃଷ୍ଟି ପ୍ରକୃତରେ ମଧୁମୟ—କେବଳ ସଂହତ ଶକ୍ତିର ପ୍ରେମସିକ୍ତ ବିରାଟ ପ୍ରାଣ ସେହି ମଧୁରତା ଆସ୍ୱାଦନ କରିପାରେ । (ଆଖିବୁଜି ପୁଣି କହିଲେ)

"ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖ ଭାଗ ଭବେତ୍ ॥"

(ଆଖି ପୋଛିଲେ) ଭାଇମାନେ, ଆଜି ମୋର ବଡ଼ ଭାଗ୍ୟର ଦିନ— ପାଉଣ ତଳ ନିଆଁ ପରି ତୁମମାନଙ୍କର ଭିତରେ ଲୁଚିରହିଥିବା ମନୁଷ୍ୟତା ଏତେ ଦିନେ ପ୍ରକାଶ ପାଇଛି । ଏହାଠାରୁ ବଳି—ସୁଖର ବିଷୟ ଆଉ କଣ ହୋଇପାରେ । ଆମ ମଧ୍ୟରେ ଏହିପରି ସ୍ନେହ, ମମତା ଆଉ ସଦ୍ଭାବ ସବୁଦିନେ ରହିଥିଲେ, ସଂସାରର ଯାବତୀୟ ଦୁଃଖ ବିପଦ କେବେହେଁ ଆମକୁ ବାଧିବ ନାହିଁ । ହିନ୍ଦୁମାନେ ସମାଜ ଗଢ଼ି ଏକସ୍ଥାନରେ ରହିବାର ମୂଳ ଉଦ୍ଦେଶ୍ୟ ହେଉଛି ଏଇ "ସହଯୋଗୀତା" —ସମସ୍ତେ ସମସ୍ତଙ୍କ ସୁଖ ଦୁଃଖରେ ସାହାଯ୍ୟ କରିବାର ଅନ୍ୟ ନାମ ହେଉଛି ବନ୍ଧୁତା । ଆମେ ଯଦି ସମବାୟ ସୂତ୍ରରେ ପ୍ରତ୍ୟେକ କାର୍ଯ୍ୟକରି ପାରିବା, ଆମର ସଂସାର, ଅଖଣ୍ଡ ସୁଖ ଶାନ୍ତିରେ ସ୍ୱର୍ଗ ପାଲଟି ଯିବ ।

ବାବନ—ଆଜ୍ଞା, ସେଇ ବିଷୟଟା ଦୟା କରି ଟିକିଏ ବୁଝାଇ—

ମିଛୁ—ନା—ନା—ବାବୁଙ୍କର ଖାଇଲାବେଳ ଗଡ଼ିଗଲାଣି । ଭାତ ଗଣ୍ଡିକ ଲୁଆ ପଥର ହବଣି ।

ଙ୍ଗଡ଼ି—ବାବନ ପଢ଼ି ଆସି ତ ଅଲେଖ ନିରଞ୍ଜନ ବାଲା—ସବୁଚିନ୍ତା ତାର କଣ ଅଛି ଯେ ସେଥିକି ତରବର ହବ ।

ବାହ୍ନିଣୀପତି—ଆଚ୍ଛା, ଆଉଦିନେ ସମବାୟ ବିଷୟ ମୁଁ ଭଲକରି ବୁଝାଇବାକୁ ଚେଷ୍ଟା କରିବି ପାଣିଏ, ବର୍ତ୍ତମାନ ତୁମକୁ

ଯଥାସାଧ୍ୟ ସାହାଯ୍ୟ କରିବାକୁ ଆମେମାନେ ପ୍ରସ୍ତୁତ । ଏଥର ତୁମର ସମସ୍ତ ଶକ୍ତି ଖଟାଇ ଲାଗିପଡ଼ । ତୁମର ଅକ୍ଳାନ୍ତ ପରିଶ୍ରମ ଆଉ କାର୍ଯ୍ୟ ତତ୍ପରତା ଉପରେ ସବୁକଥା ରହିଲାଣି ।

ଘୋଷଣା—ବୃକ୍ଷମାନଙ୍କୁ ନଷ୍ଟେଁ ନାଗିଯିବ ଆଜ୍ଞା—

( ବାହିନୀପତି ଉଠିବା ସଙ୍ଗେ ସମସ୍ତେ ଉଠୁଥିବାବେଳେ )

## ପଞ୍ଚ ପରିବର୍ତ୍ତନ



# ପଞ୍ଚମ ଦୃଶ୍ୟ

## ମଣ୍ଡଗଜପୁର ବିଲବାଟ

ମୁଣ୍ଡରେ ପାଣି ମାଠିଆଟିଏ, ହାତରେ କନାଖଣ୍ଡିକରେ ବନ୍ଧା ହୋଇଥିବା—ଟୋକାଭାତ କଂସା, ଲୁଣ, ଲଙ୍କା, ପିଆଜ ଆଉ ଶାଗ ଖରଡ଼ା ନେଇ ବିଲକୁ—ଯାଉଥିଲା ଓଅସ୍ତି—ତାହାକୁ ଦେଖି ଗଛ ଆଡ଼ୁଆଳରେ ଲୁଚି ଯାଇଥିଲା ମାର୍କଣ୍ଡିଆ । ସେତେବେଳେ ଓଅସ୍ତି ମନ ଖୁସିରେ ଗାଇ ଗାଇ ଯାଉଥାଏ ଗୋଟିଏ ଗାଉଁଲି ଗୀତ ।

(ଗୀତ—) ଉଡ଼ି ଉଡ଼ି ଗଲେ ଭଦଭଦଳିଆ ପଦୁଅଁ ପୋଖରୀ ଢେଉଁ
ଗୋ ସୁରୁ ନବଙ୍ଗନତା, ପଦୁଅଁ ପୋଖରୀ ଅକାତ ପାଣିରେ
ଫୁଲୁଚି ନେଳିଆ କଇଁ ଗୋ ସୁରୁ ନବଙ୍ଗନତା ।
ନେଳିଆ କଇଁର ଚେକ ପତର ଯେ ଘେରିଛି କମଳ ଲଟି
ଗୋ ସରୁ ପୋହଳାମାଳି, କଳମ ଶାଗ କେ ଦିଅନ୍ତା ଖରଡ଼ି
ଠିକ ଠିକ ହୁଏ ପାଚି ଗୋ ସରୁ ପୋହଳାମାଳି ॥ ପାଚି
ଅରଚୁଆ ଛଡ଼ା ଚିଡ଼ିମିଡ଼ି ହିଁଡ଼ କଢ଼େ ବୁଦା ବୁଦା ଗୋ ରଙ୍ଗ
ମହୁଲା ପାନ, ବୁଦ୍ଧି ହୁଡ଼ିଯାଏ ସେଠି କଇଁୟା ରେ ଅଖି
ଯେବେ ହୁଏ ନଦା ଗୋ ରଙ୍ଗମହୁଲା ପାନ ॥ ନଇ ସଠା
ଲୁଦେ ଖରଖରିବଣ ଉଡ଼ୁଚି ଚଅଁର ଧାଡ଼ି ଗୋ ରସ
ଯାଉଁଳି ମୁଦ, ମୁଁଟିଏ ଠିକାଲୁ ଆଣିଥିଲେ ଧନ କଦମ ଫୁଲିଆ
ଶାଢ଼ୀ ଗୋ ରସ ଯାଉଁଳି ମୁଦ ॥

(ଏତିକି ବେଳେ ପଛରୁ ଅତର୍କିତ ଭାବରେ ଆସି ମାର୍କଣ୍ଡିଆ ବଡ଼ ପାଟିରେ ଡରେଇଲା ପରି ଡାକ ଦେଲା)

ମାର୍କଣ୍ଡ—ଓଥଗ୍ରୀ···ଇ···ଇ···ଇ···ଇଃ···

ଓଥଗ୍ରୀ—(ଘୁମଆରେ ଚମକି ପଡ଼ି, ବାହାରେ ଛେଟପ ପକାଇ) ଏଁ'—ଏ ଗୁରୁଙ୍କ କଥା ମୁଁ—ଷ୍ଟେସନ୍ ମିଶିପ—ଦେଖୁଛୁ ଅସହ୍ୟ ନୋକଟା—ସଦାବାଟ, ଫେଣେ ଉଦୁ ଉଦାଆ ଦ'ସହର ଖପ୍ରେର—ତମର କଣ ଠିକଏ ହେଲେ··· ·····

ମାର୍କଣ୍ଡ—ଅକଲ ନାଇଁ କଉଚୁ ତ ? ଅଛି ଲୋ ଢେର ଅଛି—ସେଇଥି ନାଗି ତ ଆଗରୁ ସିଆଣା ଦେଇ କାଉଁସି କାମ ଚଣ୍ଡୀଙ୍କ କୋଁ କୋଁ ଆଞ୍ଚରେ ବେସରୁଆ ହେଇଚି—ଦେ'ଖେ, ତୋ ଡେଭରି ହାତରେ ଯଉଁ ଡଉଁରିଆ ବାନ୍ଧି ଦେଇଛି—ସେ ସମାନ ଚିଜ୍ ନୁହେଁ ଲୋ—ମକସ୍ ସେଠୀର ଅକାଟ୍ ପଦ···

ଓଥଗ୍ରୀ—ହାଃ ହିଁ—ଅକାଠ ହଉଚି, ଇ'ନାରେ ମୁଁ ତ କାଠ ସାଲଟି ଯାଇଥାଆନ୍ତି—ଆଉ ଟିକେ ପାଣି ମାଠିଆଟା ଠିକ ଠିକ ହେଇ ଯାଇଥାଆନ୍ତା—କଂସାକ ଯାକ ଭାତ ତଳେ ଲଢ଼ି ନାରଖାର ହେଇ ଯାଇଥାନ୍ତା କ ନାଇଁ ? ନା—ସେଥେଇଁ କି ତମ ଡଉଁରିଆ କାହ୍ନୁ କରିବ ?

ମାର୍କଣ୍ଡ—ଏଇ ଯଉଁ କଥା କଉ ଲୋ ଓଥ—ହଉ, ଘୁଟଡ଼—ମୋର ଭାଇଲା ତୋର କପୁରୁ ଦବୁ, ଦବୁଠି, କଣ ଆଣିଛୁ—ଗୁଣ୍ଡେଏ ଖାଇ ମୁନ୍ଦିଏ ପାଣି ପିଇଁବାଏ—ଭୋକରେ ମୋ ହୁଁସା ଉଡ଼ିଲାଣି—(ଗଛ ମୂଳରେ ବସି ପଡ଼ିଲା)

ଓଥଗ୍ରୀ—(ମୁଣ୍ଡରୁ ପାଣି ମାଠିଆଟା ଓହ୍ଲାଇ ରଖି, ଭାତ କଂସାରୁ କନା ଖଣ୍ଡିକ ଫିଟାଇ ମାର୍କଣ୍ଡ ଆଡ଼କୁ ଢୁଙ୍କାଇ ଦେଇ ଅଭିମାନ କରି ବସିଲା—)

ମାର୍କଣ୍ଡ—(ଭୁତ କଂସା୍ଠା ସାଗକୁ ଠାଣି ଆଣି ଚରବର ହୋଇ ଖାଉଁ ଖାଉଁ) ଇଏ ଫେଣେ, କଉଁ ଅଧ୍ୟାୟ ଖୋଲିଲୁ ?

ଓଅସ୍ତି—ମନାଷ ପରକୁତ୍ତ ମଲେ ଭୁଟେ—"ମେଡେ ଯେତେ ବୋଲିବୁ ବୋଲ୍, ମୋ ବାହାଠା ଯାକ ପୋଲ୍—" କାରଳ ତ ତେମେ ସେଇୟା—

ମାର୍କଣ୍ଡ—ଓହୋ···ହୋ···ହୋ···ଜାଇଁଲି । ଠାସକରେ କଇଦେଲୁ —ତୋ ନାଆଁ ଠା କଆଁ—ଧଇଲି ? ଏଇତ ?—ହଉ, "ଭୁଉ ବଗୁଲ୍ଲାକୁ ବଗ, ଏଠେଇଁ ଆଉକଏ କାନେଇଛି ଯେ ତେହିଁକ ଏତେ ରଗ" ହଉ, ମୋ ଉପରେ ପଇସାଏ ଜରିମାନା କର ପଚ୍ଛକେ—

ଓଅସ୍ତି—ମେତେ ଏ ଠାପସ୍ତରୁ କି ମିରିବ ଲୋ ମା—ଶୁଖିଲା ଶୁଆସ ଗୁସ୍ତକ ତେଣେ ରଖିଦେଇ ଥା'—ଦାଣ୍ଡି.ଗୁଣା, ମଥାମଣିକୁ ବନ୍ଧା ପକେଇ ନଚିନ୍ତ ହୋଇ ବଇଛ ଯେ କେବେ ଦାବ କଇଲ ? ଗତସନ କଇଥିଲ ପା' ମାଣ ବସା ନୁରୁବାର ଡେଇଁଗଲେ ପହିଲ ପୁଷରେ ଚୁଟେଇ ଆଣିବ । ଜାଇଁ ? ଖ୍ୱେଦୁଅ ଅଧ ହୋଲାଣି ପା'···

ମାର୍କଣ୍ଡ—ଆଲୋ ଘାବସ୍ତ ହୋ'ନା—ସବୁ ଆଣି ଦେବୁ—କପାରଠା ଫିଠିଗଲେ ସାତ ସେତକ ଗଢ଼ିଦେବି ଲୋ ଓଅ—

ଓଅସ୍ତି—ଆଉ କୋଉ ଜାରକୁ କପାର ଫିଠିବ ମୁଁ—ବାର କେରିକ ଖୋଠ ହେଲେ ନା ଦାନ୍ତ ତକ ଡଡ଼ି ନାକ ଘୁଷୁରିଲେ ?

ମାର୍କଣ୍ଡ—ଆଲୋ, ମାହାପ୍ର ଗୃଇଁଲେ କାଲି ସକାରେ—ଆମ ବେୱବନ ପୁରେଇଡ ଘଟଣା ଦେଖୁଛୁ ତ ? ମାଇପ ଧାନକୁଠି ମୂଲ ଗୁଉର ଗଣ୍ଡାକ ଆଇଁଲେ ଚୁଲି ଜରିବ, ନଇଲେ ନିରିଜସ୍ତ ଓପାସ—ତା'ରି ଫେଣେ ଦେଖେ—ଦଶା ହାଠିଲା, କପାର ଫିଟିଲା ନା—ଇ'ନାଗେ ଗାଁ ଗୋଠାକର ନୋକ ଗୁଏଁ ଗୁଏଁ ତା' କାମରେ ନାଗିଛନ୍ତୁ—କିଏ ବାଅନ ଦଉଚି, କିଏ ଖଚ

ଯୋଗାଉଚି, କିଏ ବାଡ଼ ବୁଜୁଚି, କିଏ ବଲ ବାନ୍ଧୁଚି, କିଏ ଲୁଣୁଆ—କରୁଚ୍ଛି—କିଏ ଘର ଘୁଇ ଦଉଚି—କଥ, ଆଜିଯାଏ ହୁଉ ନ ଥେଲା—ସବୁ କପାର ଲୋ—ଏଇ କପାର ।
(ମାର୍କଣ୍ଡ ତାହାଣ ହାତ ବଣି ଆଙ୍ଗୁଠିଟା କପାଳରେ ମାରିଲା)

ଉର୍ବଶୀ—ହଉ ଏଥର ତ ପୁରେଇତ ଘର ହରିଆ ହେଇଚ— ହାତେ ହାତେ ସବୁ କରୁଛ—ଧରୁଚ—ଦେଖିବା ଯେ ।

ମାର୍କଣ୍ଡ—କଅଣ କଇବି ଲେ—ଖେତ ଖାଲି ଉଛୁଳୁଚି—ଯା' କଅନ୍ତୁ—ସୁନା ଫଳିଚି—ବିଲବାଡ଼ି ସବୁ ଉଠିଆ—ଊରିତର ନଙ୍କାମାରିଚ ଗଛଗାରେ ବି ଏତେ ଫଳ ଧରିଚି !

ଉର୍ବଶୀ—ମଲ, ଗାଆଁଟା ଯାକର ଲୋକ ଯଉଁ ଥେରେ ଲାଗିଛନ୍ତି, ତା' ଆଉ ହୁଁନ୍ତା ନାହିଁ କ ?

ମାର୍କଣ୍ଡ—ହୁଁ, ଗୋଟାଏ କଥା ପୁରେଇତେ ମେତେ କଉଥେଲେ —"ଆରେ ମାରକଣ୍ଡିଆ, କାଙ୍ଗାଳି ରାଉତ ଗୁରିଆଟା କାହିଁକି ପଡ଼ିଚୁ, ଆମର ତ ବିଲବାଡ଼ି କାମ ଧଇଲୁଣି—ତୋ ଇସ୍ତିରୀକି ନେଇକି ଆମ ଘ'ଠିକି ଗୁଲ୍ଆ'—ଖଞ୍ଜା ତରକୁ ଦ'ବଖୁରି ଘର ତୋରିଦେବା ଯେ ସେଠେଇଁ ଦ'ପରାଣୀ ରଇବ । ତେତେ କୋଠିଆ କରି ରଖିବା. ଆଉ ତୋ ଘରିଯା—ଆମ ଘରର ବାସିପାଇଟି କରିବ, ଭଲମନ୍ଦ ଖବର ବୁଝି ପୁରେଇତଆଣୀର ବୋଲ ହାକ କରିବ—" ତୋ ଇଚ୍ଛାଟା କଣ କଇଲୁ ? ମଙ୍ଗିବୁ ?

ଉର୍ବଶୀ—ମଲ, ମେତେ ଫେଣେ ଇଚ୍ଛା ପଚ୍ଚରୁଚ କଆଁ ମଁ—ତେମେ ଗଛ ମୂଳରେ ରଇଲେ—ମେତେ ସେଇ ସରଗ—କହିଲେ ନାଣି ତ, ଗୋଟାପଣେ ଭୁରୁସା—ମାଚ୍ଛିକୁ ମଁ ଦେଲି—କଇବ ନାହିଁ—ସେ କ'ଣ ନାକେର୍ କି ? ତା ଘରେ ରଇବାକୁ କିଏ କାହିଁକି ନାମଙ୍ଗ ହବ !

ମାର୍କଣ୍ଡ—(ଭାତ ପ୍ରଭୃତି ଖାଇସାରି ମାଠିଆରୁ ପାଣି ପିଇ ଓ ଓଥଣି କାନରେ ହାତ ମୁହଁ—ପୋଛିଲା—କାନ ଗଣ୍ଠିରୁ ଦୋକତା, ଚୂନ କାଢ଼ି ଟିପରେ ଦଳି ଦଳି କହିଲା) ଏତେବେରେକେ ମୋ ଗୁଣୀଠା ଦେରି ଦ'ପଦ କଇଲୁ—ନ ହେଲେ କି ଓଥ, (ଜିଭ କାମୁଡ଼ି ପକେଇ) ଓଥଣି—ଫେଣେ ?

ମାର୍କଣ୍ଡ—ଓହୋଃ, ମୁହଁଠାରୁ ଖସିଗଲାରୁ—ହୋଓବ ରଉନାଇଁ ଲେ—ହଉ, ହଉ, ଆଉ ତ ସୁରି, ଛଅ—ମାସର କଥା—ରୁ ଗୋଟିକର ମାଆ ହେଇଗଲେ, ଅଉ କଏ ଚେତେ···॥

ଓଥଣି—ଯାଃ—ଏବୁବେରେ କେତେ ଲୋପସ ହଉ ଥ' ମଁ—(ଭଂସାଠି ଧୋଇ ପୁଣି କନାରେ ବାନ୍ଧି ହାତରେ ଝୁଲେଇଲା—ମାଟିଆକୁ ମୁଣ୍ଡେଇଲା—)

ମାର୍କଣ୍ଡ—(କଣ ଯେମିତି ମନେ ପଡ଼ିଗଲା) ଆଲୋ ହେଏ, କାଙ୍ଗାରିଆ ଭାଇ କି ନଟେଇ ଦେଇ ଆଇଥିବ—ସଧାନ ଖାଲି ହେଁଠାଲୁଥିବ ଲୋ—ମୁଁ ଯାଉଛି—(ଦୌଡ଼ି ଦୌଡ଼ି ଚାଲିଗଲା)

ଓଥଣି—ମା' ମଙ୍ଗଳ ଲୋ, ସତେ ମୋ ଗୁଆସି ଶୁଣିବୁ ମା—(ଆସିଥିବା ବାଟରେ ଫେରିଗଲା)

## ପଞ୍ଚ ପରିବର୍ତ୍ତନ



# ଷଷ୍ଠ ଦୃଶ୍ୟ

## ଗାଁ ମୁଣ୍ଡ ଝଙ୍କାବର ମୂଳେ ବାଟମଙ୍ଗଳଙ୍କ ଆସ୍ଥାନ

(ମଝିରେ ଯେଉଁ ବଡ଼ ପଥରଟି ସିନ୍ଦୂର ଲିପା ହୋଇ ଗଛକୁ ଡେସ୍ ହୋଇଛି—ସେ ହେଉଛନ୍ତି ବୁଢ଼ୀ ମଙ୍ଗଳା—ଆଉ ଅନେକ ଗୁଡ଼ିଏ ଛୋଟ ବଡ଼ ମଝିଲା ଭଳି ପଥର ଜମା ହୋଇଛି, ସେ ସବୁ ହେଉଛନ୍ତି—ମଙ୍ଗଳାଙ୍କ ବଉଁଶ—ପୁଅ, ଝିଅ, ନାତି ନାତୁଣୀ, ଅଣନାତି, ପଣନାତି ଇତ୍ୟାଦି—ସବୁଥିରେ ସିନ୍ଦୂର ଟିପା, ଚନ୍ଦନ ଛିଟ ଲାଗିଛି। କେତେଗୁଡ଼ିଏ ମାଟି ଘୋଡ଼ା ଦ୍ଵିଖଣ୍ଡକଆ ଠଉଁ ଆଙ୍ଗୁଳିଏ ପର୍ଯ୍ୟନ୍ତ ପାଖରେ ଥୁଆ ହୋଇଛି—ମଙ୍ଗଳାଙ୍କ ଅଷ୍ଟା ସିଧାରେ ବେଢ଼ା ହୋଇଛି ଖଣ୍ଡେ କଳାଶାଢ଼ୀ—ଫୁଲମାଳ ଲମ୍ବ-ଭାବରେ ଝୁଲୁଛି—ଝୁରୁ ଫୁଲଗୁଡ଼ିଏ ତଳେ ବାଛା ହୋଇଛି ତାଙ୍କର ବଉଁଶଙ୍କ ଉପରେ—ଆଗରେ ମାଟିଦୀପ, ଧୂପଦାନୀ, ଚନ୍ଦନପେଡ଼ି, ଭୋଗହାଣ୍ଡି ଥୁଆ ହୋଇଛି—ଭବନ ପଣ୍ଡା ପୂଜାରେ ବ୍ୟସ୍ତ—ଗଳ-ଲଗ୍ନୀକୃତ ବସ୍ତ୍ର ହୋଇ ଭୋବନୀପାଣି ହାତଯୋଡ଼ି ଆଗରେ ବସି-ଛନ୍ତି—ଗଛମୂଳରେ ଗୋଟିଏ କଡ଼କୁ ଆଡ଼ ହୋଇ ଶଙ୍କର ମା, କଞ୍ଚିନୀ ଆଉ ଓଥରୀ ବସିଛନ୍ତି। ଭୋବନୀଙ୍କ ପାଖରେ ଝଂଗଡ଼ି, ନକଡ଼ି ଓ ଦାରୁକୁ ଘୁଞ୍ଚି ଅପର୍ତି ଆଉ ମାର୍କଣ୍ଡିଆ ବସିଛନ୍ତି। ବରଗଛ—ଗଛ ଓହଳ ସନ୍ଧିରେ ଯନ୍ତାଲ ଖନ୍ଦା ଯୋଗାଡ଼ ଲାଗିଛି ଆଉ ଗାଁର ସୁଆନ ସୁଆନ—ଟୋକା ଦଳେ ବେଶହୋଇ ଗୀତଗାଇ ମନ ମଉଜରେ ନାଚୁଛନ୍ତି)

ପୁ—(ଏବେ) ସୁଖର୍ ଦିନ ଅଇଲା···ମଉଜ ଦିନ ଅଇଲା···
ଚଷାର୍ ଝିଅ ଲୋ···ଓଡ଼ିଆ ବୋହୂ ଲୋ···ଓ···ଓ···

ତୋର୍ ସିନ୍ଦୂର କଲ ମାଙ୍ଗରେ ଚହଟ ଲାଲ ଢୋରି ଝାଣି ଦେ
ଢୋରି ଝାଣି ଦେ ।

ସ୍ତ୍ରୀ—ଲେଟଣୀ ଗଭକୁ ଶୋଭା, ଝୁମ୍ପ ଝୁମ୍ପ ଘୁଙ୍ଗୁର ଲଗା
ଗୋଜି କାଠି ଗୁଞ୍ଜି ଦାଇ ପୂଲ ଲୋ···ଦ୍ୱାର ଗଉରା ମୂଳେ···
ତୁଲସୀ ଚଉଁରା ମୂଳେ ନିତ ପାଣି ଦେ···ନିତ ପାଣି ଦେ ।୦।

ପୁ—ଧିକ ଧିକ ଧିନ ଧିନ୍ ତା ଧିନ—ଧିକ ଧିକ ଧିନ ଧିନ୍ତା ଧିନ···
ଧିକ ଧିକ ଧିନ ଧିନ୍ତା—ସୁଖର୍ ଦିନ ଅଇଲ × ×
ଢୋରି ଝାଣି ଦେ ।

ସ୍ତ୍ରୀ—ନାକରେ ନାକ ଚଣା ଦଣ୍ଡୀ ବସଣୀ ଗୁଣା
କାନେ ଗଣ୍ଠିଆ ଚମ୍ପା କଲା କି,

ପୁ—( ଆଉ ) ବେକରେ ନାଇବୁ ହରଡ଼ ଫାଲ ତୁ
ଧାନୁଆ ବା'ସରି ତଳକି;

ସ୍ତ୍ରୀ—ଓଲଟ ମଇର ଠଡ଼ି ପିନ୍ଧୁ ଗାଡ଼ିଆ ଶାଢୀ
ଝୁପ ଝୁପିକା ଛିଟ ଅଙ୍ଗୀ ଆଣି ଦେ···ଆଣି ଦେ । ୧ ।

ପୁ—ଥେଇ ଥେଇ ଥେଇ···ଥେଇ ତନାକ୍ ଧିଘିନା ଧିନା, ଧିନାକ
ଧିଘିନା ତନା ( ୨ )

ଖଡୁ ପଇଁଚି ବଟଫଳ ବାହିରେ ବାଜୁ ଭୁଣ୍ଡି ଝୁଲଇ,
ପାଦେ ପାହୁଡ଼ ବଳା ଝମକ ଝୁଣ୍ଟିଆ ଲେ କଟକୁ ଆଣି
ଦେବି ମନଲଇ,

ସ୍ତ୍ରୀ—ମଗୁଶିରର ମାଣ ପୂଜାକୁ ଖିରିସା ପାଣି ସରୁଚକୁଲି ଆରିସା
ପିଠା ନଡ଼ିଆ କେଲା

ପୁ—କରିବୁ ଛୁଆଁ ପତ୍ର କାକରା ଛେନାର୍ ପୁର
ଆଜହୁଁ ଗୁମାନ ହିଡ଼ ବନ୍ଧ ହାଣିଦେ···ହାଣିଦେ । ୨ ।
( ନାଚି ନାଚି ଗ୍ଲଲି ଗଲେ )

ଖଲୁପଧାନ—( ନେପଥ୍ୟରୁ ଡାକ ଡାକ ପହଞ୍ଚିଲେ ) ମାର୍କଣ୍ଡରେ ...ହେ ମାର୍କଣ୍ଡିଆ...ତା ନାଁ କଣ ତ ପାଖିଟରେ ବଇଚୁ ଯ୍ମା ତା ନାଁ କଣ କ ପଗୃଶେ ଡାକରେ ଓ—କରୁନ୍ନ—

ମାର୍କଣ୍ଡ—ନାଇଁ ପଧାନେ, ଟିକଏ ଘୁଇ ନିଦ ନାଗି ଯାଇ ଥେଲା—ଦାହଟା କାଉନା ଅଚ୍ଛିନା—

ଖଲୁ—ବୋପାଲେ ନିଦ—ତା ନାଁ କଣକି, ଠିଆ ଠିଆ ନିଦ, ବସୁ ବସୁ ନିଦ—ହଉ, ହଉ ଘୃଲେ, ମସଲ ଭିଡିଏ ବାଟି ଦବୁ ( ମାର୍କଣ୍ଡ ଉଠିଗଲା ) ତା ନାଁ କଣ କ ଆଉ ଦେଖେ, ମିଞ୍ଜେଇକି ବାଟିବୁ—ଏଁ ?—ହୁଁ (ଅପର୍ଣ୍ଣି ପ୍ରତ) ବାଘ ଅପର୍ଣ୍ଣି ତା ନାଁ କଣ କି, ଜାଲ ନଘଟ ଧଇଲଣି—ଯାଆକି ଆମ ବାଇରୁ ତା ନାଁ କଣ ତ ଦା'ଗୁରି ଗୋଘ୍ଲ ଜାଲେଣୀ ଧରି ଙ୍ଗପଟି ଅ ( ଅପର୍ଣ୍ଣ ଗଲାପରେ ) ଏଇଟି ଥେଲା ଦେଭି ବେ'ଗି ଆସିବୁ, ବାବୁଟା ପଗ୍...

ମିଚ୍ଛୁ—ଜାମ କେ ଯାଏ ଗଲା ପଧାନେ ?

ଖଲୁ—ନାଇଁ, ଯଇଲଣି ସେ, ତା ନାଁ କଣ କି ଷୀରି ଖେଡଡ଼ି ମାମଲତ ଖତମ—ବାକ ଖାଲି ତା ନାଁ କଣକି ଡଅଣ୍ଡଟା ଉଷ୍ଣୁରି ଦେଲେ ପତର ପଡ଼ିବ ।

ଙ୍ଗଡ଼ି—ଆଉ...ଶାଙ୍କର ବନ୍ଧ୍ଵଦ କରିଥିଲେ ପଗ୍ ?

ଖଲୁ—ହେଃ ହେଃ ହେଃ—ଆଣ୍ଣା—ତା ନାଁ କଣ କି ସେ ଆଉ କେତେ ଦଣ୍ଡ—ଆମ୍ଭ କଟା ସରିଛି—ଖାଲି ଟିକିଏ ହାଣ୍ଡିରେ ତା ନାଁ କଣକି ଦ୍ଦୁ ଘୁଡ଼େଇ ଦେଲେ ଜାମ ଫତେ ( ପାଠିକରି ) ମଙ୍ଗୁଳିଆ କିରେ—ତା ନାଁ କଣ କି କଦଳୀ ପତର କାଟିବାକୁ କିଏ ଗଲା ( ସାଧାରଣ ଗଳାରେ ) ମାହାପାତ୍ରେ, ବାବୁ ଆଇଲେ ନାଇଁକି ?

ନଜଡ଼ି—ବାବନ ପର୍ଦ୍ଦି ହାସ୍ଥ ରଇଛନ୍ତି ପା,' ତାଙ୍କୁ ସାଙ୍ଗରେ ଘେଡ଼ି ଆସିବେ ।

ଖଗୁ—ହଉ, ହଉ, ତାହେଲେ ତାଙ୍କଣଙ୍କ ଆସୁଥିବେ ।
ଭୁବନନା, ତାନାଙ୍କଣଙ୍କ ଠାକୁରାଣୀଙ୍କ ମାଳଣା ବଡ଼ ଲାଗି ତ ?

ଭୁବନ—କେତେବେଳୁ କି—ନାଟ ସୁରୁ ହୋଇ ନ ଥେଲା ପା'
ସଇଲାଣି ପଧାନେ—

ଖଗୁ— (ନେପଥ୍ୟକୁ ଲକ୍ଷ୍ୟ କରି) ଗଣିଆନା, ଏଣିକ କାମ ବଢ଼ିଲାଣି,
ତାଙ୍କଣଙ୍କ ହାତ ଫରୁଡ କର । ପାନ ମସଲା ପାଇଁ ଗଲା
ଯେ ତା ନାଁ କଣଙ୍କ ଚଇତନଆଁ ସେଇଆଡ଼େ ଲାଗିଲା ।
( ବଡ଼ ପାଟିରେ ) ଚଇତନଆ, ଚଇତନଆରେ—

( ଡାକ ଡାକି ଗୁଲିଗଲା )

(ଏତକି ବେଳେ ବାବନ ସଦ୍ଦିହାସ୍ଙ୍କ ସାଙ୍ଗରେ କଥାବାର୍ତ୍ତା
କରୁ କରୁ ବାହିନୀପତି ପହଞ୍ଚିଲେ । )

ବାହିନୀପତି—ପୀଢ଼ାପାଣି ଛଡ଼ା ସବୁ କାମ ସରିଲାଣି ପରା ।

(ସମସ୍ତେ ଉଠି ନମସ୍କାର କଲେ, ବସିବାକୁ ଆସନ ଦେଲେ)

ମିତୁ—ଆଜ୍ଞା ହଁ, ଅଲ୍ଲେ ବହୁତେ ସବୁ କାମ ସରିଛି । ମାତ୍ରକ
ଆପଣଙ୍କ ଅପେକ୍ଷା ଥିଲା । (ନେପଥ୍ୟ ଆଡ଼କୁ ପାଟିକରି) ହଇ
କି ହେ ପଧାନେ, ବାବୁ ଅଇଲେଣି ।

ଖଗୁ—(ନେପଥ୍ୟରୁ) ବାବୁ ଆଇଲେଣି (କହି କହି ପହଞ୍ଚିଲେ)
ଆଜ୍ଞା ଓଳକି, ଇ'ଲାଗେ ମୁଁ ତ ଆପଣଙ୍କ କଥା ପଚାରୁଥିଲି
ମହାପାତ୍ରେ କହିଲେ, ବାବନ ଗୋସେଇଁ ରଇଛନ୍ତି—

ବାବନ—ପଧାନେ, ତମ ନାଟ ପିଲାଏ କଣ ନାଟକଲେ ବାବୁ ତ
ଦେଖି, ପାରି ନଲ ନାହିଁ ।

ଖଗୁ—ଦେଖିବେ, ନିଶ୍ଚେ ଦେଖିବେ । ( ନେପଥ୍ୟକୁ ) ଆରେ
ଗୋକୁଳା, ବଇଁଶିଆ, ଅରକ୍ଷିତା, କିରିତନଆ, ତମର ସେଇ

ଗୀତ ଗଣ୍ଡ୍ରଧ ଧରି ଆଉ ଯେପେ ନାଚ କରିବେଟି ବାପ—
( ଦୁଣି ଘଁର ସେହି ଓଠାଙ୍କ ଦଳ ଗୀତଟିକୁ ଗାଇ ଗାଇ
ନାଚି ନାଚି ଗନ୍ଧିଲେ)

ପୁ—ଧିକ ଧିକ ଧିନ ଧିନ୍‌ତା ଧିନ

ସ୍ତ୍ରୀ—ଧିକ ଧିକ ଧିନ ଧିନ୍‌ତା ଧିନ

ପୁ—ଧିକ ଧିକ ଧିନ ଧିନ୍‌ତା ତନ ଥିଲଙ୍ଗ ଦଧିଘନ ତା, ଥିଲଙ୍ଗ
ଦଧିଘନ ତା, ଥିଲଙ୍ଗ ଦଧିଘନ ଧା ।

ଉଭୟେ—ସୁଖର ଦିନ ଅଇଲା, ମଉଜ ଦିନ ଅଇଲା ଚଷାର
ହିଁଅ ଲୋ, ଓଡ଼ିଆ ବୋହୂ ଲୋ, ସିନ୍ଦୂର କଲି, ଟିକ୍‌ଣ ଲାଲି
ଟୋକି ଠାଣି ଦେ ।

ସ୍ତ୍ରୀ—ଲୋଚଣୀ ଗଲକୁ ଶୋଭା ହିଁମୁ ହିଁମୁ ଝୁଂଝୁର ଲଗା ଟୋକିକାଠି
ଗୁଞ୍ଜି ଜାଇଫୁଲ ଲୋ, ଦ୍ୱାର ଗଉଣ ମୂଳେ ତୁଳସୀ ଚଉଁରା
ମୂଳେ ନତ ପାଣିଦେ ।

ପୁ—ବାର ମାସର ପରବ ତେର ଜାତ,
ଧରମ କରମ ଓଷା ବରତ ନାତ,
କରୁଥା’ ସେତେ ବୁଦ୍ଧି ଲହଙ୍କା ସୁନା ପେନ୍ଥି,

ସ୍ତ୍ରୀ—ଓଳଅ ! ଅମାଉ ତୋଲି, ସବୁ ରହିଛି ମୁଁ ରି ଯୋଗୀ ଭିକାରୀ
ଥାଳେ ମନ ଜାଣି ଦେ’...ମନ ଜାଣି ଦେ, । ୨ ।

ତେଜବନୀ—ଆଜ୍ଞା, ଏତେବେଳେ ଠାଆ ସଜଡ଼ା ହେଲାଣି ।

ଜାହ୍ନବୀଦତ୍ତ—ହଉ ହଉ, ଗାଣିଏ ହେଲ - ଆସ ମହାପାତ୍ରେ, ସାନ୍ଧ୍ୟେ
ଉଠେ—ଉଠ, ଉଠ । ପଡ଼ିଥିବାରେ, ଆଉ ବିଳମ୍ବ କାହିଁକି ?
( ଯାଉଁ ଯାଉଁ ଲେଉଟି ରଙ୍ଗମଞ୍ଚର ଦର୍ଶକଙ୍କ ପ୍ରତି ଲକ୍ଷ୍ୟକରି
କହିଲେ ) ଆଜ୍ଞେ ଆପଣମାନେ କିଛି ମନେ କରିବେ ନାହିଁ ।

ପାଣ୍ଡିଙ୍କର ସହଯୋଗୀମାନଙ୍କର ଧୀଶକ୍ତି. ଏଥି ଉତ୍ସାହ ଉତ୍ସବ । ତେଣୁ ନେପଥ୍ୟରେ ଶ୍ଲୋକନ ଏବଂ ଜୟଧ୍ୱନିର ନିର୍ଦ୍ଦେଶ । ( ସମସ୍ତେ ଏକ ସଙ୍ଗରେ ଉଠି ଚରଣରୁ ଗଡ଼ୁବାଡ଼େ ଗୋଟିକ ପରେ ଗୋଟିଏ ନିଷ୍କ୍ରାନ୍ତ ହେବେ—ଧୀରେ ଧୀରେ ପଡ଼ିଲା...

ଯବନିକା

